ପାର୍ଲେ

# ରାମ ଓ ଶ୍ୟାମ

## ମହାକାଶର ବିଚିତ୍ର ପ୍ରାଣି ସହିତ ସାକ୍ଷାତ




























ରସାଳ - ମଧୁର - ମଜାଦାର

ପାର୍ଲେ

ପପିନ୍ସ






# ଫ୍ୟାରେକ୍ସ®-ଏଗ୍

## ୬ ମାସରୁ ଏହା ଦେବାକୁ ଆରମ୍ଭ କରନ୍ତୁ ।




ନୂଆ ଫ୍ୟାରେକ୍ସ-ଏଗ୍ ରେ ଅଛି ପ୍ରୋଟିନ ଯାହା ତାର ଏହି ବଢି ଉଠିବା ସମୟରେ ଏକାନ୍ତ ପ୍ରୟୋଜନ । ଏହା ପୂର୍ବରୁ ରନ୍ଧାଯାଇଛି ତେଣୁ ଛୋଟ ଛୋଟ ଶିଶୁମାନେ ମଧ୍ୟ ଏହାକୁ ସହଜରେ ହଜମ କରିପାରିବେ ।

**ଫ୍ୟାରେକ୍ସ-ବଢ଼ି ଉଠିବାର ଏକ ସ୍ୱାଦଭରା ଉପାୟ।**

GX/32/203/OR

ଫ୍ୟାରେକ୍ସ ଶିଶୁ-ବିକାଶ ସଂଭାର ମଧ୍ୟରେ ଏବେ ମିଳୁଛି-୧.ଦୁଗ୍ଧଯୁକ୍ତ ଫ୍ୟାରେକ୍ସ ସିରିଅଲ୍ ୨.ଫ୍ୟାରେକ୍ସ-ଭେଜ ୩.ଫ୍ୟାରେକ୍ସ ଏଗ୍।



# ଜହ୍ନମାମୁଁ

ନଭେମ୍ବର ୧୯୮୮



## ବିଷୟ-ସୂଚୀ






ପ୍ରତି ସଂଖ୍ୟା : ୩-୦୦

ବାର୍ଷିକ ମୂଲ୍ୟ : ୩୬-୦୦

ଗୋଟିଏ ୱାଲ୍ଟ୍ ଡିସ୍ନି କିମ୍ବା ଟିଂକିଲ୍ କମିକ୍
ବହି କେବଳ ୧ ଟଙ୍କା ମୂଲ୍ୟରେ ।




କଲ୍‌ଗୋଟ୍
ଫ୍ଲୋରିଗାର୍ଡ ଟୁଥ୍‌ପେଷ୍ଟ ର
ଯେ କୌଣସି ପ୍ୟାକ୍ ସହିତ ।

ନିଜର କମିକ୍ ବହି ଶୀଘ୍ର ନେଇ ଆସନ୍ତୁ ।
ଏହି କମିକ୍ ବହି ଇଂରାଜି, ହିନ୍ଦୀ ଓ ବଙ୍ଗଳା ଭାଷାରେ ଉପଲବ୍ଧ ।
ଏହି ସୁଯୋଗ ବିନା ମଧ୍ୟ ପ୍ୟାକ୍ ଉପଲବ୍ଧ । ଏହି ସୁଯୋଗ,
କେବଳ ପଶ୍ଚିମବଙ୍ଗ, ଓଡ଼ିଶା, ବିହାର ଏବଂ ଆସାମରେ ଉପଲବ୍ଧ ।



Rediffusion/CP/5573 c OR

# ଏବେ ହର୍ଲିକ୍ସ
# ଅତିରିକ୍ତ କ୍ୟାଲସିୟମ ସହ





**"ଏହାର ଅର୍ଥ ପ୍ରତ୍ୟେକଙ୍କ ପାଇଁ ଅଧିକ ଉତ୍ତମ ସ୍ୱାସ୍ଥ୍ୟ ।"**

ବର୍ତ୍ତମାନ ହରଲିକ୍ସ ଅତିରିକ୍ତ କ୍ୟାଲସିୟମରେ ସମୃଦ୍ଧ— ଯାହାକି ବଢ଼ିଲା ପିଲାମାନଙ୍କର ଶକ୍ତ ଦାନ୍ତ ଓ ସୁସ୍ଥ ହାଡ଼ ଗଠନ ପାଇଁ ଅତି ଗୁରୁତ୍ୱପୂର୍ଣ୍ଣ ଏବଂ ସମସ୍ତ ପରିବାରର ଉତ୍ତମ ସ୍ୱାସ୍ଥ୍ୟ ପାଇଁ ଏକାନ୍ତ ଜରୁରୀ । ଏହା ମଧ୍ୟ ଆଶୁ ପ୍ରସବା ଓ ସ୍ତନ୍ୟଦାୟୀ ମାଆମାନଙ୍କ ସକାଶେ ଅତ୍ୟାବଶ୍ୟକୀୟ ଅତିରିକ୍ତ କ୍ୟାଲସିୟମ ଯୋଗେଇବାରେ ସାହାଯ୍ୟ କରେ ।

ହରଲିକ୍ସ, ଶକ୍ତି ଓ ସାମର୍ଥ୍ୟ ଯୋଗାଉଥିବା ପ୍ରୋଟିନ୍, ଭିଟାମିନସ୍, ମିନେରାଲସ୍ ଓ କାର୍ବୋ-ହାଇଡ୍ରେଟସ୍ ଭଳି ପ୍ରାକୃତିକ ପରିପୁଷ୍ଟି ଉପାଦାନରେ ଭରପୂର । ତେଣୁ ବର୍ତ୍ତମାନ, ଅତିରିକ୍ତ କ୍ୟାଲସିୟମ ଅର୍ଥ, ଅଧିକ ଉତ୍ତମ ସ୍ୱାସ୍ଥ୍ୟ ।

**ପୁଷ୍ଟି ଯୋଗାଇବାରେ ଅଦ୍ବିତୀୟ**




HTA 6038 ORI






# ଚନ୍ଦ୍ରମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗି ରେଡ୍ଡୀ

"କନକ ଉପତ୍ୟକାର କାହାଣୀ" ଯେ କେବଳ ରାଜ୍ୟର ହଜାର ହଜାର ବାଳକ ବାଳିକା ଗଭୀର ଆଗ୍ରହରେ ପଢୁଛନ୍ତି, ତାହା ନୁହେଁ, ବୟସ୍କ ଲୋକେ ବି ମନ ଦେଇ ପଢୁଛନ୍ତି ବୋଲି ଆମ ପାଖରେ ସମ୍ବାଦ ପହଞ୍ଚୁଛି । ଏହା ଯଥାର୍ଥ । ଏ କାହାଣୀର ତାତ୍ପର୍ଯ୍ୟ ଅପରିସୀମ । ଏହା ସମସ୍ତଙ୍କୁ ଆନନ୍ଦ ଦେଉଥିବାରୁ ଆମେ ଆନନ୍ଦିତ ।

## ଅମରବାଣୀ

କିଂ କୁଲେନ ବିଶାଲେନ ବିଦ୍ୟାହୀନସ୍ୟ ଦେହିନଃ ।
ଅକୁଲୀନୋଽପି ବିଦ୍ୟାବାନ୍ ଦେବୈରପି ସ ପୂଜ୍ୟତେ ॥

[ଅତି ଜଣାଶୁଣା ବଂଶରେ ଜାତ ମଣିଷ ବିଦ୍ୟାହୀନ ହେଲେ ତାକୁ କେହି ସମ୍ମାନ କରନ୍ତି ନାହିଁ । ଅପର ପକ୍ଷରେ ଅଖ୍ୟାତ ବଂଶର ଲୋକ ବିଦ୍ୱାନ୍ ହେଲେ ଦେବତାମାନେ ବି ତାକୁ ସମ୍ମାନ କରନ୍ତି ।]

ବର୍ଷ : ୨୨ ନଭେମ୍ବର ୧୯୮୮ ଅଙ୍କ : ୫

ପ୍ରତି ସଂଖ୍ୟା : ଟ. ୩-୦୦ :: ବାର୍ଷିକ ମୂଲ୍ୟ : ଟ. ୩୬-୦୦

## ଜହ୍ନମାମୁଁ ସମ୍ବାଦ-ଝଟକା



### ଅସମ୍ଭବ ସମ୍ଭବ

ପୁନାର ଦୁଇଜଣ ଅନ୍ଧ ଯୁବକ ୧୬,୦୦୦ ଫୁଟ ଉଚ୍ଚ ପାତାଳକ ପର୍ବତ ଉପରକୁ ଯାଇ ପାରିଛନ୍ତି । ଏ ପର୍ବତ ପଶ୍ଚିମ ହିମାଳୟର ଅନ୍ତର୍ଭୁକ୍ତ ।

ତିନିଜଣ ବନ୍ଧୁଙ୍କ ସହାୟତାରେ ଏ ଅସାଧ୍ୟ ସାଧନ କରିଥିବା ଦୁଇ ଯୁବକଙ୍କ ନାମ ଦତ୍ତାତ୍ରେୟ ଏବଂ ମୋହନ ।

### ଡାଇନୋସାର୍ କିପରି ଅବଲୁପ୍ତ ହେଲେ ?

ଛଅ କୋଟି ବର୍ଷ ତଳେ ପୃଥିବୀ ପୃଷ୍ଠରେ ବିଚରଣ କରୁଥିବା ଅତିକାୟ ପ୍ରାଣୀ ଡାଇନୋସାର୍‌ମାନେ କିପରି ଲୁପ୍ତ ହୋଇଗଲେ ? ବୈଜ୍ଞାନିକମାନେ ଏବେ କହୁଛନ୍ତି କି ଏକଦା ଆଗ୍ନେୟଗିରିମାନଙ୍କରେ ଏଭଳି ଭୟଙ୍କର ବିସ୍ଫୋରଣ ହୋଇଥିଲା ଯେ ଫଳରେ ଏକ ପ୍ରକାର ରାସାୟନିକ ବର୍ଷା ହେଲା ଓ ସେଥିରେ ଡାଇନୋସାର୍‌ମାନେ ମଲେ । ସେହି ବିସ୍ଫୋରଣରୁ ନିର୍ଗତ ଲାଭା ବର୍ତ୍ତମାନ ପର୍ଯ୍ୟନ୍ତ ଦାକ୍ଷିଣାତ୍ୟର ଭୂଗର୍ଭରେ ରହିଛି ।





### ଏକ ହଜାର ବର୍ଷର ରୋଷେଇଶାଳ

ପୁରୀରେ ଶ୍ରୀଜଗନ୍ନାଥଙ୍କ ମନ୍ଦିରର ରୋଷେଇଶାଳ ଏକ ହଜାର ବର୍ଷର ପୁରୁଣା ପ୍ରତିଷ୍ଠାନ । ଦୈନିକ ଏକ ଲକ୍ଷ ଲୋକ ଖାଇପାରିବା ଭଳି ଖାଦ୍ୟ ଏଠି ପ୍ରସ୍ତୁତ ହୋଇପାରେ । ଏହା ଚାଲୁ ରହିଥିବା ପୃଥିବୀର ପ୍ରାଚୀନତମ ରୋଷେଇଘର ।

### ବାପ୍‌ରେ ଗତି !

ଅନ୍ତରୀକ୍ଷରେ ବୈଜ୍ଞାନିକମାନେ ସମ୍ପ୍ରତି ଏପରି ଗୋଟାଏ ନକ୍ଷତ୍ରର ସନ୍ଧାନ ପାଇଛନ୍ତି, ଯାହା ଆଉ ଗୋଟିଏ ନକ୍ଷତ୍ର ଚତୁଃପଟେ ବୁଲୁଥାଏ । କିନ୍ତୁ କିଭଳି ଗତିରେ ବୁଲୁଥାଏ, ତାହା କଳନା କରିହେବ ନାହିଁ । ଗୋଟିଏ ସେକେଣ୍ଡ୍‌ର ଏକହଜାର ଭାଗରୁ ଏକ ଭାଗ ସମୟରେ ଏହାର ଗୋଟିଏ ପ୍ରଦକ୍ଷିଣ ସମ୍ପୂର୍ଣ୍ଣ ହୁଏ ।



# କାହାର ଯୁକ୍ତି ଅଧିକ ?

ପୂର୍ବକାଳର କଥା । ଜଣେ ରଜା ଥିଲେ ଯେ ସେ ଯାହା ମନ ତାହା କରୁଥିଲେ । କିନ୍ତୁ ସେ ସର୍ବଦା ବାହାଦୁରୀ ଦେଖାଇ କହୁଥାନ୍ତି କି ସେ କେବେ ଅଯୌକ୍ତିକ କାମ କରନ୍ତି ନାହିଁ । ଥରେ ସେ ଅସୁସ୍ଥ ହେଲେ । ବହୁତ ଦିନ ଧରି ସେ ଆରୋଗ୍ୟ ଲାଭ ନ କରିବାରୁ ସେ ଘୋଷଣା କଲେ, "ଯିଏ ମୋତେ ଭଲ କରିଦେବ, ସେ ମୋ ରାଜ୍ୟରୁ ଗୋଟିଏ ଅଂଶ ପାଇବ । କିନ୍ତୁ ଯିଏ ଚେଷ୍ଟା କରି ବିଫଳ ହେବ, ସେ ତା' ମୁଣ୍ଡଟି ହରାଇବ । ଯୁକ୍ତିଯୁକ୍ତ କଥା ।"

ଦୁଇ ତିନିଜଣ ଆଶାୟୀ ବୈଦ୍ୟ ଚେଷ୍ଟା କଲେ, କିନ୍ତୁ ରାଜାଙ୍କୁ ଭଲ କରି ପାରିଲେ ନାହିଁ । ଫଳରେ କାରାରୁଦ୍ଧ ହେଲେ ଓ ମୁଣ୍ଡ କାଟ ପାଇଁ ଅପେକ୍ଷା କଲେ ।

ବିଜୟ ଶର୍ମା ନାମକ ଜଣେ ବୈଦ୍ୟ ରାଜାଙ୍କୁ ଭେଟି କହିଲେ, "ମହାରାଜ ! ମୁଁ ଆପଣଙ୍କ ସର୍ତ୍ତ ଗ୍ରହଣ କଲି । ମୁଁ ଯଦି ସପ୍ତାହକ ଭିତରେ ଆପଣଙ୍କୁ ଭଲ କରି ନ ପାରିବି, ତେବେ ଆପଣ ମୋ ମୁଣ୍ଡ ନେବେ । ଯଦି ପାରିବି, ତେବେ ମୁଁ ଆପଣଙ୍କ ମୁଣ୍ଡ ନେବି ।"

"କି ସାହସ !" ରାଜା ଚିତ୍କାର କରି ଉଠିଲେ ।

"ମହାରାଜ ! ମୁଁ ଯୁକ୍ତିଯୁକ୍ତ କଥା କହୁଛି । ମୁଁ ଯଦି ଆପଣଙ୍କୁ ଭଲ କରି ନ ପାରିଲେ ମୋ ମୁଣ୍ଡ ଦେବି, ଭଲ ହୋଇ ପାରିଲେ ଆପଣ ଆପଣଙ୍କ ମୁଣ୍ଡ ନଦେବେ କିଆଁ ? ଏହା ପ୍ରଥମ ଯୁକ୍ତି । ଆପଣଙ୍କ ମୁଣ୍ଡଟି ଗଲେ ଭବିଷ୍ୟତରେ ବୈଦ୍ୟମାନେ ନିରାପଦ ହେବେ । ଏହା ଦ୍ୱିତୀୟ ଯୁକ୍ତି । ବୈଦ୍ୟମାନେ ନିରାପଦ ହେଲେ ରୋଗୀମାନଙ୍କ ଉପକାର ହେବ । ଏହା ତୃତୀୟ ଯୁକ୍ତି..."

"ହେଲା, ହେଲା । ମୋର ଚିକିତ୍ସା କର । ତମେ ମୋତେ ଭଲ କରି ବା ନକର, ତମ ମୁଣ୍ଡ ନେବି ନାହିଁ ।" ରାଜା ବନ୍ଦୀଥିବା ବୈଦ୍ୟ ଦୁଇଜଣଙ୍କୁ ବି ଛାଡ଼ିଦେଲେ ।





# ଭାଗ୍ୟର ବିଡ଼ମ୍ବନା

ବୀରପୁର ଗାଁରେ ଥିଲା ଭୈରବ ନାମକ ଟୋକା । ସେ ଥିଲା ଗରିବ; କିନ୍ତୁ ତା'ଠାରୁ ଦୁଃଖର କଥା ହେଲା, ବିଚରା ପିଲାବେଳେ ଥରେ ଗୋଟାଏ ରୋଗରେ ପଡ଼ି କଥା କହିବା ଶକ୍ତି ହରାଇଥିଲା ।

ଜୀବିକା ନିର୍ବାହ ଦିଗରେ ଅବଶ୍ୟ ତା'ର ବିଶେଷ ଅସୁବିଧା ନଥିଲା । ତା'ର ପଲେ ମେଣ୍ଢା ଥିଲେ । ଗାଁଠୁଁ ଏକ କୋଶ ଦୂରରେ ଗୋଟିଏ ବଣ ଥିଲା । ବଣ ଓ ଗାଁ ମଝିରେ ବିସ୍ତୃତ ଘାସ ପଡ଼ିଆ । ଭୈରବ ସବୁଦିନ ତା' ମେଣ୍ଢା ପଲକୁ ସେହି ଘାସ ପଡ଼ିଆକୁ ନେଇଯାଏ ।

ଦିନେ ଦେଖିବା ବେଳକୁ ଗୋଟାଏ ମେଣ୍ଢା-ଛୁଆ ମିଳୁ ନାହିଁ । ଭୈରବ ତ ପାଟି କରି ମେଣ୍ଢାମାନଙ୍କର ନାମ ଧରି ଡାକି ପାରିବ ନାହିଁ । ସେ ଖାଲି ଏଣେତେଣେ ନୀରବରେ ଖୋଜିବ । ଖୋଜି ଖୋଜି ସେ ବଣ ଭିତରକୁ ଚାଲିଗଲା । ଚାହିଁ ଚାହିଁ ସେ ବଣର ଗୋଟାଏ ନିବିଡ଼ ଅଞ୍ଚଳରେ ପହଞ୍ଚିଲା ।

ହଠାତ୍ ଗୋଟାଏ ଗୁଂଫା ଉପରେ ତା' ଆଖି ପଡ଼ିଲା । ମେଣ୍ଢାଛୁଆ ଗୁଂଫା ଭିତରେ ଥିବ କି ? ସେ ଏଇଆ ଭାବୁଛି, ଭିତରୁ ମେଣ୍ଢାଛୁଆର ରଡ଼ି ଶୁଭିଲା । ସେ ଖୁସି ହୋଇଯାଇ ଭିତରେ ପଶିଲା ।

ଗୁଂଫା ଅପେକ୍ଷା ତାକୁ ବରଂ ସୁଡ଼ଙ୍ଗ କହିଲେ ଠିକ୍ ହେବ । ତାହା ବେଶ ଦୀର୍ଘ । ଭୈରବ କିଛି ଦୂର ଯାଇ ସୁଡ଼ଙ୍ଗର ଶେଷ ଭାଗକୁ ଅନାଇ ଯାହା ଦେଖିଲା, ସେଥିରେ ତା' ଦେହରୁ ଭପ୍ସୁରେ ଝାଳ ବହିଗଲା । ସୁଡ଼ଙ୍ଗର ଶେଷରେ ବସି ରହିଛି ଗୋଟିଏ କଙ୍କାଳ । ଭୈରବ ପ୍ରଥମେ ଭୂତ ବୋଲି ଭାବି ପଳାଇଯିବାକୁ ଠିକ୍ କଲା । ତା'ପରେ

ମୂଷାକୁ ବାଘ, ବାଘକୁ ମୂଷା !



ତା' ମନରେ କୌତୁହଳ ହେଲା ଓ ସେ ଧିରେ ଧିରେ ସେ କଙ୍କାଳ ଆଡ଼େ ଅଗ୍ରସର ହେଲା । ସେ ବୁଝିଲା କି କେହି ଜଣେ କୌଣସି ପ୍ରକାର ସାଧନାରେ ବସି ରହିଥିବା ଅବସ୍ଥାରେ ପଞ୍ଚତ୍ୱ ପ୍ରାପ୍ତ ହୋଇଛି । କାଳକ୍ରମେ, କୌଣସି କାରଣରୁ, ତା' ଦେହର ଅବଶେଷ ବୋଇଲେ ଖାଲି କଙ୍କାଳଟି ରହିଛି ।

କଙ୍କାଳ ପାଖରେ ଗୋଟିଏ ପାତ୍ରରେ ପାଣି ଥିଲା । ଭୈରବକୁ ଭୀଷଣ ଶୋଷ ଲାଗୁଥିଲା । ସେ ପାଣିତକ ପିଇ ପକାଇଲା ।

"ଆଃ, କି ସନ୍ତୋଷ !" ତା' ପାଟିରୁ ଏତିକି ବାହାରିଗଲା । ତା' ଆନନ୍ଦ ଓ ବିସ୍ମୟ କଥା କହିଲେ ନ ସରେ । ସେ କଥା କହିଲା କିପରି ? ବର୍ଷ ବର୍ଷ ଧରି ତ ସେ ମୂକ ଥିଲା । ନିଶ୍ଚୟ ସେ ପାଣିରେ କିଛି ଯାଦୁ ଥିଲା ।

ସେ ତା' ମେଣ୍ଢାଛୁଆକୁ ଧରି ନାଚି ନାଚି ଗୁମ୍ଫା ବାହାରକୁ ଆସିଲା । ବାହାରେ ଆସି ଦେଖିଲା, କେମିତି କେଜାଣି ତା' ମେଣ୍ଢା ଛୁଆର ଲଂଜଟି ନାହିଁ । ସେ ନିଜକୁ ନିଜେ କହିଲା, "ଗାଁ ଯାକରେ ଖାଲି ମୋହର ଗୋଟାଏ ମେଣ୍ଢାର ଲଂଜ ରହିବ ନାହିଁ! ଗାଁର ସବୁ ମେଣ୍ଢାଙ୍କ ଲଂଜଟିମାନ ଉଡ଼ ଯାଆନ୍ତା କି !"

ଆଶ୍ଚର୍ଯ୍ୟର କଥା, ସେ ଗାଁରେ ପହଞ୍ଚି ଦେଖିଲା, ଗାଁର ସବୁ ମେଣ୍ଢାଙ୍କର ଲଂଜ ଉଡ଼ିଯାଇଛି । ଗାଁ ଲୋକେ କିଛି ବୁଝିପାରୁ ନଥାନ୍ତି । ସେମାନେ ଖାଲି ବିସ୍ମିତ ହେଉଥାନ୍ତି !

ଭୈରବ ବୁଦ୍ଧିମାନ ନ ହେଲେ ବି ନିପଟ ଓଲୁ ଥିଲା ବୋଲି କହିହେବ ନାହିଁ । ସେ ବୁଝିଲା ଯେ ଯାଦୁ ପାଣି ଯେ ଖାଲି ତାକୁ ବାକ୍‌ଶକ୍ତି ଦେଇଛି, ସେତିକି ନୁହେଁ, ତାଠୁଁ ଅଧିକ କିଛି ଶକ୍ତି ମଧ୍ୟ ଦେଇଛି । ତାହା ହେଲା, ସିଏ ଯାହା କହିବ, ତାହା ଫଳିଯିବ ।

"ମୋର ଏ ଶକ୍ତି ବିଷୟରେ କାହାକୁ ନ କହିବା ଉତ୍ତମ ହେବ ।" ସେ ମନେ ମନେ ଏଇଆ ଭାବିଲା ଓ ସମସ୍ତଙ୍କ ବିସ୍ମୟ ଦେଖି ମୁରୁକି ମୁରୁକି ହସୁଥାଏ ସିନା, କିନ୍ତୁ ସେ

ଘଟଣା ଯେ ତାହାର ଯୋଗୁଁ ହୋଇଛି, ଏକଥା କାହାକୁ କହିଲା ନାହିଁ ।

ସେ ପୁରା ଗୋଟାଏ ଦିନ ଏ କଥା ଗୋପନ ରଖିଲା । କିନ୍ତୁ ତା'ପରେ ଆଉ ଧୈର୍ଯ୍ୟ ରହିଲା ନାହିଁ । ତା'ର ଜଣେ ସଖାକୁ ସେ ଗର୍ବରେ ତା' ନିଜ ଶକ୍ତି କଥା କହିଦେଲା । ସେ ଟୋକା ଆଉ ଜଣକୁ କହିଲା । ସେ ଜଣକ ଆଉ ଦୁଇ-ଜଣକୁ କହିଲା । ଗୁହୁଁ ଗୁହୁଁ ଭୈରବର ଅଦ୍ଭୁତ ଶକ୍ତି ବିଷୟରେ ଗାଁ ଯାକର ଲୋକେ ଜାଣିଗଲେ ।

ପରଦିନ ଗାଁ ଜମିଦାରର ଗୁମାସ୍ତା ତାକୁ ତା' ନିଜ ଘରକୁ ଡାକି ନେଇଗଲା । ସେଠି ଗୁମାସ୍ତା ତାକୁ ବହୁତ ଭଲ ଖାଇବାକୁ ଦେଲା । ତା'ପରେ ଗୁମାସ୍ତା କହିଲା, "ସୁନା ପିଲାଟି! ମୁଁ ଯାହା କହୁଛି କର । ତୁ କହ କି ଜମିଦାର ମରିଯା'ନ୍ତୁ । ତୋ କଥା ତ ଫଳିଯିବ । ସେ ମରିଗଲେ ମୁଁ କାଗଜପତ୍ର ଏମିତି ଭାବରେ ଠିକ୍ କରି ରଖିଛି ଯେ ବଳେ ବଳେ ଜମିଦାରି ମୋ ହାତକୁ ଚାଲି ଆସିବ ।"

"ନା, ନା, ମୁଁ ସେଭଳି କଥା କିପରି କହିବି?" ଭୈରବ ଅନିଚ୍ଛା ପ୍ରକାଶ କଲା ।

"ଆରେ ବାବୁ, ମୁଁ ଜମିଦାର ହେଲେ ତୋ କଥା କ'ଣ ବୁଝିବି ନାହିଁ? ତୋତେ କ'ଣ ଆଉ ମେଣ୍ଢା ଚରାଇ ଜୀବିକା ନିର୍ବାହ କରିବାକୁ ହେବ? ରାଜାମାନଙ୍କ ପାଖରେ ଯେମିତି ମଂତ୍ରୀ ଥା'ନ୍ତି, ତୁ ସେମିତି ମୋର ପାତ୍ର, ମିତ୍ର, ମଂତ୍ରୀ—ଏକା ଧାରରେ ସବୁ ହେବୁ । ଏଥର ବୁଝୁଛୁଟି? ମୁଁ ଯାହା





ଶୁଣିଲା । କେହି ଜଣେ ଆସି ତା' କୋଠରୀ ଖୋଲିଦେଲା ଓ ଭୈରବ ବାହାରି ଆସିଲା । ବୁଝିବା ବେଳକୁ ଗୁମାସ୍ତା ମରି ଯାଇଛି !

ଭୈରବ ଭାବିଲା, ଏ ଗାଁରେ ରହିବା ତା' ପକ୍ଷରେ ଆଉ ନିରାପଦ ନୁହେଁ । ବଣ ସେପାରିରେ ଗୋଟିଏ ଛୋଟିଆ ଗାଁ ଥାଏ । ସେ ଭାବିଲା, ସେଠାରେ ଯାଇ କୁଡ଼ିଆଟିଏ ବନାଇ ରହିବ । ମେଣ୍ଢାପଲକୁ ଧରି ସେ ବଣ ଭିତର ଦେଇ ଚାଲିଲା । ହଠାତ୍ ଦଳେ ଡାକୁ ତାକୁ ଘେରିଗଲେ । ସେ ପାଟି କରି କହିଲା, "ମୋତେ ସାଧାରଣ ଲୋକ ବୋଲି ଭାବୁଛ କି ? ଖବରଦାର୍ !"

ତା' ଆସ୍ଫାଳନ ଶୁଣି ଡାକୁମାନେ ହସିଲେ । ସେତିକିବେଳେ ଗୋଟାଏ ବାଘ ଭୈରବର ଗୋଟାଏ ମେଣ୍ଢା ଉପରକୁ କୁଦି ପଡ଼ିଲା । ଭୈରବ ପାଟି କରି କହିଲା, "ଆରେ ବାଘ ! ତୁ ମର !" ସଙ୍ଗେ ସଙ୍ଗେ ବାଘ ମରି ପଡ଼ିଗଲା । ଡାକୁମାନେ ଏ ଦୃଶ୍ୟ ଦେଖି ନିଜର ଆଖିକୁ ପରତେ ଯିବେ କି ନା ଭାବୁଛନ୍ତି, ଭୈରବ ଭାବିଲା ତା' ମେଣ୍ଢାମାନଙ୍କୁ ସେ ବାଘ ବନାଇଦେଲେ ଆଉ ବଣ ଭିତରେ ସେମାନଙ୍କ ଉପରକୁ କିଛି ବିପଦ ଆସିବ ନାହିଁ । ସେ କହିଲା, "ମୋ ମେଣ୍ଢାପଲ ବାଘପଲ ହୋଇଯାଉ !" ତାହାହିଁ ହୋଇଗଲା । ସେ ଦୃଶ୍ୟ ଦେଖି ଡାକୁଦଳ ପ୍ରାଣ ଭୟରେ ଦୌଡ଼ି ପଳାଇଲେ ।

କହିଲି, ତାହା କର । ତୋର ଲାଭ ଛଡ଼ା କ୍ଷତି ନାହିଁ ।" ଗୁମାସ୍ତା ତାକୁ ବୁଝାଇ କହିଲେ ।

"ନା, ନା, ମୋର ମଂତ୍ରୀ ହେବା ଲୋଡ଼ା ନାହିଁ । ମୁଁ ସେପରି କରିବି ନାହିଁ ।" ଭୈରବ କହିଲା ।

"ଯଦି ନ କହିବୁ, ତେବେ ତୁ ମୋ ଘରେ ବନ୍ଦୀ ହେଲୁ ।" ଗୁମାସ୍ତା କହିଲା । କଥା ଅନୁସାରେ ସେ ଭୈରବକୁ ଗୋଟାଏ କୋଠରୀରେ ବନ୍ଦ କରି ରଖିଲା ।

"ଏ ଲୋକଟା ମରିଗଲେ ଯାଇ ମୋତେ ମୁକ୍ତି ମିଳିବ !" ମନକୁ ମନ ଭୈରବ କହିଲା । ସେତେବେଳକୁ ରାତି ଆସି ଅଧାଅଧି ହେଲାଣି । ଭୋର ବେଳକୁ ସେ କାନ୍ଦଣା ଓ ପାଟିଗୋଳ

ଭୈରବ ତା' ବାଘ ପଲକୁ ଧରି ବଣ ବାହାରେ ପହଞ୍ଚିଲା । ସିଏ ତାକୁ ବାଘପଲ ଅଡ଼ାଇ ଯିବାର ଦେଖିଲା, ସେ ଗ୍ରାମଆରେ ଡ଼ରି ଦୌଡ଼ିଲା । କେହି ଜଣେ ଯାଇ ରାଜାଙ୍କୁ ସେ ବିଷୟରେ ଖବର ଦେଲା । ରାଜା ମନ୍ତ୍ରୀଙ୍କୁ ସଙ୍ଗେ ସଙ୍ଗେ ସେଠାକୁ ପଠାଇଲେ । ମନ୍ତ୍ରୀ ଆସି ଦୂରରେ ଠିଆ ହୋଇ ଲକ୍ଷ୍ୟ କଲେ, ବାଘ ଭଳି ଦିଶୁଥିବା ସେ ପଶୁଗୁଡ଼ିକ ମେଣ୍ଢା ଭଳି ଶବ୍ଦ କରୁଛନ୍ତି । "ହଇହୋ ଯୁବକ ! ତମେ ଯାଦୁ ଜାଣିଛ ବୋଲି ମନେ ହୁଏ ।" ସେ କହିଲେ ।

"ନିଶ୍ଚୟ !" ଭୈରବ ସ୍ୱୀକାର କଲା । ବଣ ବାହାରେ ଆଉ ତା' ମେଣ୍ଢାଦଳ ପ୍ରତି ବିପଦ ନାହିଁ ଜାଣି ସେ କହିଲା, "ମୋ ମେଣ୍ଢାପଲ ପୁଣି ମେଣ୍ଢାପଲ ହୋଇଯାଉ ।" ତାହାହିଁ ହୋଇଗଲା ।

ମନ୍ତ୍ରୀ ତା' ପାଖକୁ ଆସି ରାଜାଙ୍କ ଦରବାରକୁ ଯିବାକୁ ତାକୁ ନିମନ୍ତ୍ରଣ ଜଣାଇଲେ । ଭୈରବ ତାଙ୍କ ସାଙ୍ଗରେ ଗଲା । ମନ୍ତ୍ରୀ ରାଜାଙ୍କୁ ଗୋପନରେ କହିଲେ, "ଏ ଯୁବକର କିଛି ଅଦ୍ଭୁତ ଶକ୍ତି ରହିଛି । କିନ୍ତୁ ତା'ର ବୁଦ୍ଧି ନାହିଁ । ଥିଲେ ସେ କେତେ କ'ଣ କରି ପାରନ୍ତାଣି । ବିପଦ ହେଲା, ତାକୁ ଯଦି ଆମ ଶତ୍ରୁପକ୍ଷ ହାତ କରିନେବେ, ତେବେ ଆମର ବହୁତ ଅନିଷ୍ଟ କରିପାରିବେ । ତାକୁ ବରଂ ଆମେ ରଖିବା ।"

ରାଜା ସମ୍ମତ ହେଲେ । ଭୈରବକୁ ଜଣେ ଅମାତ୍ୟ ହିସାବରେ ଗ୍ରହଣ କରାଗଲା । ତାକୁ



ଗୋଟାଏ ସୁନ୍ଦର ଘର ଦିଆଗଲା ଓ ବଢ଼ିଆ ଖାଇବା ପିଇବାର ବ୍ୟବସ୍ଥା କରି ଦିଆଗଲା ।

କିନ୍ତୁ ଭୁଞ୍ଜା ଖାଇପିଇ ବସିରହି ତାକୁ ବିରକ୍ତ ଲାଗିଲା । ତା' କୋଠାର ଦରୁଆନ୍ ସହ ଗପସପ କରି ବେଳ କାଟୁଥାଏ । ଦିନେ ଦରୁଆନ୍ କହିଲା, "ବାବୁ, ତମେ ତ ଯାହା କହିବ ତାହା ହେବ । ତମେ ଜାଣ, ଆମ ରଜାଙ୍କର ପୁଅ ନାହିଁ; ଗୋଟିଏ ବୋଲି ଝିଅ । ତାକୁ ବାହା ହେଲେ ତମେହିଁ ଦିନେ ରଜା ହେବ! କିନ୍ତୁ ବାବୁ, ମୋତେ ମନ୍ତ୍ରୀ କରିବ !"

କଥାଟି ଭୈରବ ମନକୁ ପାଇଲା । ସେ ଯାଇ ପହଞ୍ଚିଲା ରାଜାଙ୍କ ପାଖରେ ଓ କହିଲା, "ମଣିମା ! ମୁଁ ରାଜକନ୍ୟାଙ୍କୁ ବିବାହ ହେବ ।"

ରାଜା ହତବାକ୍ ହୋଇ ରହିଲେ । ଭୈରବକୁ ସଙ୍ଗେ ସଙ୍ଗେ ମନା କରିଦେଲେ ବିପଦ ହେବ । ପୁଣି ତା' ଅଜବ ପ୍ରସ୍ତାବରେ ହଁ ଭରିବାର ପ୍ରଶ୍ନ ବି ଉଠୁନାହିଁ । ସେ କହିଲେ, "ବାବୁ ! ତମ ପ୍ରସ୍ତାବ ବିଚାର କରିବା । ବର୍ତ୍ତମାନ ଦିବାହାର ସମୟ ହୋଇଗଲାଣି । ଖାଇବା ଆସ ।"

ଦୁହେଁ ଖାଇ ବସିଛନ୍ତି, ହଠାତ୍ ଭୈରବ ଭାବିଲା, "କାହିଁକି ରାଜା ମୋତେ ତାଙ୍କ ସହ ଖାଇବାକୁ ଡାକିଲେ ? ଖାଦ୍ୟରେ ବିଷ ମିଶାଇଦିଆ ଯାଇନାହିଁ ତ ?" ଏ ସନ୍ଦେହ ତାକୁ ଏତେ ଉଦ୍‌ବେଳିତ କଲା ଯେ ତା' ମୁଣ୍ଡ ବୁଲାଇ ଦେଲା । ତା'ର ମନେ ହେଲା, ସେ ଯେପରି ସତକୁ ସତ ବିଷ ଖାଇ ଦେଇଛି ! ସେ ମୂର୍ଚ୍ଛା ଯିବା ଅବସରରେ କହିଲା, "ଆଗେ ମୁଁ କେଡ଼େ ନିଶ୍ଚିନ୍ତ ଥିଲି ! ସେମିତି ଅବସ୍ଥାକୁ ଫେରିଯାଆନ୍ତି କି !"

ତେଣୁ ଫେରିବା ବେଳକୁ ଭୈରବର ଆଉ ବାକ୍‌ଶକ୍ତି ନାହିଁ । ରାଜା ତା' ସହ ଦୁଇଜଣ ଦେହରକ୍ଷୀ ଦେଇ ତା' ମେଣ୍ଢାପଲ ସହ ତାକୁ ତା' ଗାଁ ବୀରପୁରକୁ ପଠାଇ ଦେଲେ । ତାକୁ କିଛି ଟଙ୍କା ବି ଦେଲେ ।






# ଦୁଇ ପକ୍ଷ

ରାମପୁର ଗାଁର ଜୟଦାସର ଗୋଟିଏ ବୋଲି ଝିଅ । ନାମ ସୁକୁମାରୀ । ଝିଅଟି ସତରେ ସୁକୁମାରୀ । ମାଛିକୁ ମ କହେନାହିଁ । ସ୍ୱଭାବ ଅତି ଧୀର ।

ଜୟଦାସ ତା' ପାଇଁ ବର ଖୋଜୁଥାନ୍ତି । ସୁକୁମାରୀର ଇଚ୍ଛା ସେ ତମେଇ ଗାଁର ସୁବ୍ରତକୁ ବିଭା ହେବ । ତମେଇରେ ସୁକୁମାରୀର ମାମୁଁ ଘର । ମାମୁଁ ଘର ପାଖରେ ସୁବ୍ରତର ଘର । ସେଇଠି ଦୁହିଁଙ୍କର ଭେଟ ହୋଇଥାଏ ।

ସୁବ୍ରତର ବାପା ରଘୁ ପ୍ରଧାନ ଅବଶ୍ୟ ଏତେ କଥା ଜାଣି ନଥିଲେ । ଯେତେବେଳେ ଜୟଦାସ ତାଙ୍କ ପୁଅ ସହ ଝିଅର ବିବାହ ପ୍ରସ୍ତାବ ପକାଇଲେ, ସେତେବେଳେ ରଘୁ ପ୍ରଧାନ କହିଲେ, "ଅତି ଭଲ କଥା । ତେବେ ଏଇ ଯେଉଁ ଆଜିକାଲି କହନ୍ତି ବାଟ ଖର୍ଚ୍ଚ, ସେ ବାବଦରେ ବେଶୀ ନୁହେଁ, ତିରିଶ ହଜାର ଟଙ୍କା ଦେବାକୁ ହେବ ।"

ଜୟଦାସ ଗମ୍ଭୀର ହୋଇ କହିଲେ, "ଆପଣଙ୍କୁ ବି ନିର୍ବନ୍ଧ ବେଳେ ମୋ ଝିଅକୁ ବାର ଭରି ସୁନାହାର ଦେବାକୁ ହେବ ।"

"ବାର ଭରି !" ରଘୁ ପ୍ରଧାନ ଚମକି ଉଠିଲେ ।

"ହଁ ଆଜ୍ଞା, ସେଇଟା ଆମ ବଂଶର ପରମ୍ପରା ।" ଜୟଦାସ କହିଦେଲେ ।

"ମୁଁ ବାର ଭରି ଓଜନର ସୁନାହାର ଦେଇପାରିବି ନାହିଁ ।" ରଘୁ ପ୍ରଧାନ କହିଲେ ।

"ବେଶ୍, ମୁଁ ବି ତିରିଶ ହଜାର ଟଙ୍କା 'ବାଟଖର୍ଚ୍ଚ' ଦେଇପାରିବି ନାହିଁ ।" ଜୟଦାସ ଶୁଣାଇ ଦେଲେ ।

ସୁବ୍ରତ ଏକଥା ଶୁଣିଲା । ସେ ଯାଇ ବିବେକବାବୁଙ୍କୁ ଏକଥା କହିଲା । ବିବେକ-

ବାବୁଙ୍କ ପ୍ରତି ଉଭୟ ଜୟଦାସ ଓ ରଘୁ ପ୍ରଧାନଙ୍କର ସମ୍ମାନ ଥାଏ । ବିବେକବାବୁ ରଘୁ ପ୍ରଧାନଙ୍କୁ ଡାକି କହିଲେ, "ତମେ ସୁନାହାର ଦେବାକୁ ମଙ୍ଗିଯାଅ ।"

"ଟଙ୍କା ପାଇବି କେଉଁଠୁ ?" ରଘୁ କହିଲେ ।

"ଧାର କର । ଯେଉଁ ତିରିଶ ହଜାର ପାଇବ, ସେଥିରେ ପରିଶୋଧ କରିବ ।"

ରଘୁ ପ୍ରଦାନ ରାଜି ହେଲେ । ହାର ଯେତେବେଳେ ବୋହୂ ପାଖରେ ରହିବ । ବୋହୂ ତ ତାଙ୍କ ଘରର !

ବିବେକବାବୁ ଜୟ ଦାସଙ୍କୁ କହିଲେ, "ତମେ ଟଙ୍କା ଦେବାକୁ ରାଜି ହୋଇଯାଅ । ନିର୍ବନ୍ଧ ବାହାଘର ନୁହେଁ । ତମେ ନିର୍ବନ୍ଧକୁ ଯେଉଁ ହାର ପାଇବ, ତାକୁ ବିକିଦେବ । ବିବାହ ପରେ ଯାଇ ବୋହୂ ସେ ଘରର । ବିବାହ ପର୍ଯ୍ୟନ୍ତ ସେ ତମ ଘରର ।"

ବାହାଘରର ବ୍ୟବସ୍ଥା ହୋଇଗଲା । ସବୁ ପକ୍କା ହୋଇଯିବା ପରେ, ଉଭୟ ପକ୍ଷରୁ ନିମନ୍ତ୍ରଣପତ୍ର ବଣ୍ଟା ସରିବା ପରେ ବିବେକବାବୁ ରଘୁ ପ୍ରଧାନଙ୍କୁ ଖୋଲିଖୋଲି ସବୁ କହିଦେଲେ ଓ ମନ୍ତବ୍ୟ ଦେଲେ, "ମନେରଖ ! ବୋହୂ ତମେ ଦେଇଥିବା ହାର ପିନ୍ଧି ଆସିପାରିବ ନାହିଁ । ଆଉ ସେପାଇଁ ଯେ ତମେ ଦାୟୀ—ଅର୍ଥାତ୍ ତମେ ଦାବୀ କରିଥିବା ଟଙ୍କା ଯୋଗୁଁ ହାରଟି ସେ ହରାଇଛି—ଏକଥା ସେ ଜୀବନରେ ଭୁଲିବ ନାହିଁ । ତମେ ଦିନେ ବୁଢ଼ା ହେବ । ସେତେବେଳେ ଟଙ୍କା ଗଣୁଥିବ, କିନ୍ତୁ ବୋହୂର ସ୍ନେହ ଶ୍ରଦ୍ଧା ଆଶା କରିବ ନାହିଁ ।"

ରଘୁ ପ୍ରଧାନ ଗୁମ୍ ହୋଇ ରହି କହିଲେ, "ମୋର ଟଙ୍କା ଦରକାର ନାହିଁ । ଜୟ ଦାସଙ୍କୁ କହନ୍ତୁ, ସେ ହାର ବିକିଦେବେ ନାହିଁ । ତାହା ବୋହୂର ହୋଇ ରହିଥାଉ ।"

"ସାବାସ ! ଏହାକୁ କହନ୍ତି ସଦ୍‌ବୁଦ୍ଧି ।" ବିବେକବାବୁ ରଘୁ ପ୍ରଧାନର ପିଠି ଥାପୁଡ଼େଇ ଦେଇ କହିଲେ ।






[ ୧୧ ]

[ଆପାତତଃ ରାଜୁ ଆସି ଏପରି ଏକ ରାଜ୍ୟରେ ପହଞ୍ଚିଛନ୍ତି, ଯେଉଁଠି ଲୋକେ ସର୍ବଦା ସନ୍ତୁଷ୍ଟ । କାହାରି ମନରେ କିଛି ପାଇବା ପାଇଁ ଆଶା ନାହିଁ; ତେଣୁ ହତାଶା ବି ନାହିଁ । ରାଜକୁମାରୀ ଯେପରି ଗୀତ ଗାଇ ପାରିବେ ସେହି ବର ଆଣିଦେବାର ପ୍ରତିଶ୍ରୁତି ଦେଇ ରାଜୁ ତାଙ୍କ ସାହାଯ୍ୟରେ ତା'ର ଲକ୍ଷ୍ୟ ସ୍ଥଳରେ ପହଞ୍ଚିବାକୁ ଉଦ୍ୟମ କଲେ । ତା'ପରେ···]

ହରିଣଟିଏ ଦୌଡ଼ି ଯାଉଥିବାର ଦେଖି ରାଜକୁମାରୀ ପାଟି କରି କହିଲେ, "ହରିଣ ! ନୀଳ ପର୍ବତ ଶୀଖରରେ ଏ ବର୍ଷର ନକ୍ଷତ୍ର ଫଳଟି ଫଳି ସାରିଛି କି ନାହିଁ ଟିକିଏ ଦେଖିଲୁ!"

ହରିଣ ସଙ୍ଗେ ସଙ୍ଗେ ପାଖରେ ଥିବା ପାହାଡ଼ ଶୀର୍ଷକୁ ଚଢିଗଲା । କିନ୍ତୁ ପଛ ଦୁଇଗୋଡ଼ ଉପରେ ଭାରସାମ୍ୟ ରକ୍ଷା କରି ସେ ସିଧା ଠିଆ ହୋଇ ଦୃଷ୍ଟିପାତ କରିବା ସତ୍ତ୍ୱେ ନୀଳ ପାହାଡ଼ ତା' ଦୃଷ୍ଟିର ଆଢୁଆଳରେହିଁ ରହିଲା । ତା' ଇଙ୍ଗିତରେ ଗୋଟିଏ ସୁକୁମାର ଶଶକ ତା' ଉପରେ ଚଢ଼ିଯାଇ ବେକ ଯଥା ସମ୍ଭବ ଲମ୍ବାଇ ଅନାଇଲା, କିନ୍ତୁ ନକ୍ଷତ୍ର ତରୁ ତା' ଆଖିରେ ବି ପଡ଼ିଲା ନାହିଁ । ତା' ଡ଼ାକରା ପାଇ ଗୁଣ୍ଡୁଚିମୂଷାଟିଏ ଆସି ତା' ଉପରେ ଠିଆ ହୋଇ ବହୁ କସରତ୍ କଲା, କିନ୍ତୁ ଫଳ ହେଲା ନାହିଁ । ସେଉଠୁ ଗୁଣ୍ଡୁଚି ଅଦୂରର

ମନୋଜ ଦାସ



ବୃକ୍ଷଟିଏ ଉପରେ ବସିଥିବା ଚଢ଼େଇକୁ କିଛି କହିଲା। ଚଢ଼େଇ ତା' ମୁଣ୍ଡ ଉପରେ ଉଡୁଥିବା ଗୋଟିଏ ଛଞ୍ଚାଣକୁ କିଙ୍କାସାଟି ଜଣାଇଦେଲା। ଛଞ୍ଚାଣ ଥରେ ଚକ୍ରାକାରେ ବୁଲି ନକ୍ଷତ୍ର ତରୁ ଆଡ଼େ ତୀର ଭଳି ଉଡ଼ିଯାଇ ଫେରି ଆସି ଖବର ଦେଲା : ଦିନକ ଭିତରେ ଫଳ ପାଚିଯିବ।"

"ଚମତ୍କାର!" ରାଜକୁମାରୀ ଆନନ୍ଦରେ ହାତତାଳି ଦେଇ ରାଜୁକୁ କହିଲେ, "ଦିନଟିଏ ଏଠି କଟାଇ ତା'ପରେ ନକ୍ଷତ୍ର ଫଳ ଖାଇଦେଇ ତମ ଲକ୍ଷ୍ୟ ସ୍ଥଳକୁ ଚାଲିଯିବ।"

ସେ ରାଜ୍ୟରେ ଦିନଟିଏ ରହିବା ଭିତରେ ରାଜୁର କେତେ ଅଭିଜ୍ଞତା ହୋଇଗଲା। ସେ ରାଜ୍ୟର ଲୋକେ ନିଶ୍ଚିତ ସୁଖୀ। ସେମାନଙ୍କର ପୁଣି ରହିଛି କେତେ ଅଦ୍ଭୁତ କାମ କରିଭଳି ଶକ୍ତି। ଜହ୍ନ ଆଲୁଅ ନୀଳାଭ ନା ସବୁଜାଭ ନା ସ୍ୱର୍ଣ୍ଣାଭ ନା ରୂପେଲି ହେବ, ସେମାନଙ୍କ ବରାଦ ଉପରେ ତାହା ନିର୍ଭର କରୁଥିଲା। ସେମାନେ କଳ୍ପନା କରୁଥିଲେ କେତେ ମଧୁର ଘଟଣା ଓ ଦୃଶ୍ୟାବଳି। ଯଦି ସେସବୁ କଳ୍ପନାକୁ ସେମାନେ ଆଙ୍କି ପକାଉଥିଲେ, ତେବେ ସେମାନେ ଚାହିଁଲେ ସେସବୁ ଅଙ୍କନ ବାସ୍ତବ ଘଟଣା ଓ ଦୃଶ୍ୟରେ ପରିଣତ ହୋଇଯାଉଥିଲା। ଫଳରେ ସେମାନେ ଅଜବ ହର୍ମ୍ୟମାଳା, ଅପୂର୍ବ ଫୁଲ ଫଳ ଭରା ଉଦ୍ୟାନ ବେଷ୍ଟିତ ସରୋବରମାନ ଓ ଆହୁରି କେତେ ଅଦ୍ଭୁତ ଜିନିଷ ସୃଜନ କରୁଥିଲେ। ସେସବୁ ଅବଶ୍ୟ ଦୀର୍ଘସ୍ଥାୟୀ ହେଉ ନଥିଲା, କିନ୍ତୁ ସେ ପାଇଁ ସେମାନଙ୍କର ଅବଶୋଷ ନଥିଲା।

କିନ୍ତୁ ରାଜକୁମାରୀଙ୍କ ପ୍ରତି ତା'ର ପ୍ରବଳ ଆକର୍ଷଣ ସତ୍ତ୍ୱେ ରାଜୁ ସେଠାକାର ବାତାବରଣରେ ଅଧୈର୍ଯ୍ୟ ଅନୁଭବ କଲା। କିଛି ଅସମ୍ଭବ ବା ଦୁଃସାହସିକ କାମ କରିଭଳି କ୍ଷମତା ଏ ସନ୍ତୋଷ ରାଜ୍ୟର ବାସିନ୍ଦାମାନଙ୍କର ନଥିଲା। ସେମାନଙ୍କ ମନରେ ଆଶଙ୍କା ଯେମିତି ନଥିଲା, ସେମିତି କିଛି ଆଶା ବି ନଥିଲା। ରାଜୁର ତ ମନେ ହେଲା, ଆଶା କ'ଣ ସେତକ ସେମାନେ ଜାଣି ନାହାନ୍ତି!

ରାଜକୁମାରୀ ତାକୁ ନୀଳ ପର୍ବତ ଶୀଖରକୁ ନେଇ ଗଲାବେଳେ ରାଜୁ ବିମର୍ଷ କଣ୍ଠରେ କହିଲା, "ଆମେ ମଣିଷମାନେ ଏତେ ବିସ୍ମୟକର କାମ କରିବାକୁ ସକ୍ଷମ, ଯାହା ତମ ଭଳି ସଦା-ସନ୍ତୁଷ୍ଟ



ସୁନ୍ଦର ପ୍ରାଣୀମାନେ କଳ୍ପନାକୁ ବି ଆଣି ପାରିବେ ନାହିଁ । କିନ୍ତୁ ଆମର ଦୁର୍ଭାଗ୍ୟ ହେଲା, ଆମର ଶକ୍ତି ଓ ସ୍ୱାଧୀନତାକୁ ଆମେ ପ୍ରାୟ ମନ୍ଦ କାମରେହିଁ ଲଗାଇଥାଉଁ ।"

"କିନ୍ତୁ ମଣିଷ ବଦଳି ପାରିବ, ପାରିବ ନାହିଁ ?" ରାଜକୁମାରୀ ପ୍ରଶ୍ନକଲେ ।

"ପାରିବ, ଯଦି ଚାହିଁବ । କିନ୍ତୁ ଯେତେ ଅଜବ ଶୁଭିଲେ ବି ସତ କଥାଟି ହେଲା, ମଣିଷ ନିଜର ଅଜ୍ଞାନତାକୁ ଭାରି ପ୍ରେମ କରେ, ଗେଲ କରେ । ଅନ୍ତତଃ ମୋର ପଥଦର୍ଶକ ତପସ୍ୱୀ ଏଇକଥା କହୁଥିଲେ ।

ସୂର୍ଯ୍ୟୋଦୟ ହେଉଥିଲା । ସନ୍ତୋଷର ସେ ରାଜ୍ୟରେ ଚମକି ଉଠୁଥିଲା ପ୍ରଶାନ୍ତ ଦ୍ୟୁତି । ନୀଳ ପାହାଡ଼ ଉପରେ ନକ୍ଷତ୍ର ତରୁ ଶାଖାରେ ଫଳିଥିଲା ଗୋଟିଏ ମାତ୍ର ଫଳ । ସେ ଗୋଟିକ ଚମକୁଥିଲା ବାସ୍ତବିକ ନକ୍ଷତ୍ର ଭଳି । ରାଜକୁମାରୀ ତାହା ତୋଳି ରାଜୁକୁ ଧରାଇ ଦେଲେ ।

"ସେ ନିମ୍ନଦେଶକୁ ଅନାଅ । ଦେଖିବ ତମ ଲକ୍ଷ୍ୟସ୍ଥଳୀର ସୀମାନ୍ତ । କିନ୍ତୁ ସେ ସୀମାନ୍ତରେ ସର୍ବଦା ଲାଗିଥାଏ ପ୍ରଚଣ୍ଡ ଝଡ଼ । ନିୟତ ବଜ୍ରାଘାତ ହେଉଥାଏ । ଘୂର୍ଣ୍ଣିବାତ୍ୟାରେ ଘୂରି ଘୂରି ଉପରକୁ ଉଡ଼ିଯାଏ ଭୀମକାୟ ଏକ ଏକ ଶିଳାଖଣ୍ଡ ଓ ତା'ପରେ ତଳେ ପଡ଼ି ଧୂଳିସାତ୍ ହୋଇଯାଏ । ଗିରିସଙ୍କଟ ସବୁ ହୁଏତ କିଟିକିଟି ଅନ୍ଧକାର, ନଚେତ୍ ଗୋଟିଏ ପ୍ରକାର ଅଦ୍ଭୁତ ଆଲୁଅରେ ଦୀପ୍ୟମାନ । ତମେ ଏ ଫଳଟି ଖାଇ ଅଗ୍ରସର ହେଲେ ପ୍ରାକୃତିକ ଝଡ଼ ଝଞ୍ଜା ବା ଘୂର୍ଣ୍ଣିବାୟୁ ତମର କିଛି କ୍ଷତି କରିବ ନାହିଁ, କିନ୍ତୁ କ୍ଷତି କରିପାରେ କୌଣସି ଆଧି-ଭୌତିକ ଶକ୍ତି—ବିଶେଷ କରି ତମେ ଯଦି ଡରିଯିବ । ତମ ଭିତରେ ଭୟ ନଥିଲେ ସେମାନେ ତମର ତିଳେ ବି ହାନି କରିପାରିବେ ନାହିଁ ।"

ରାଜକୁମାରୀ ରାଜୁକୁ ବିଦାୟ ଦେଲେ ।

ରାଜୁ କେଇପାଦ ଅଗ୍ରସର ହୋଇ ଦେଖିଲା ଆଗରେ ଗୋଟିଏ ଗିରିସଙ୍କଟ । ତିନି ଦିଗରେ ଉତ୍ତୁଙ୍ଗ ଗିରିଶୃଙ୍ଗମାନଙ୍କୁ ମେଘ ଆବୃତ କରିଥାଏ—ଯେମିତି ଚଦର ଘୋଡ଼ିଘାଡ଼ି ହୋଇ ବୈଠକରେ ବସିଥାନ୍ତି କେତେଜଣ ପ୍ରାଜ୍ଞ କୁଳବୃଦ୍ଧ ।



ରାଜୁ ଡେଇଁ ପଡି ଗିରିସଙ୍କଟର ଦ୍ୱାର ଦେଶରେ ପହଞ୍ଚିଲା ଓ ତା'ପରେ ବୁଲିପଡି ଅନାଇଲା । କିନ୍ତୁ ସେତେବେଳେ ତା' ପଟ୍ଟ-ଭୂମିକୁ ଆଚ୍ଛାଦନ କରିପାରିଥାଏ ବେଶ ସ୍ଥୂଳ ଧରଣର କୁହୁଡି । ଆଗକୁ ବି ମାତ୍ର ଦୁଇ ତିନିହାତ ପର୍ଯ୍ୟନ୍ତ ଯାହା ଦେଖି ହେଉଥାଏ । ଭୀଷଣ ଶୀତଳ ପବନ ଆସି ଧକ୍କା ଦେଉଥାଏ; ପାଦତଳେ ମୃଦୁ ଜଳ ସ୍ରୋତ; ତା' ଭିତରେ ଅସଂଖ୍ୟ ଛୋଟ ଛୋଟ ପଥରଖଣ୍ଡ ।

ହଠାତ୍ ତା' ଆଖି ଝଲସାଇ ଦେଲା କେତେ ମୁହୂର୍ତ୍ତ ବ୍ୟାପି ବିଦ୍ୟୁତ୍ ସ୍ଫୁରଣ । ତା'ପରେ ଶୁଭିଲା ପ୍ରଚଣ୍ଡ ବଜ୍ରଧ୍ୱନି; ସତେ ଅବା ଉପରର ଗୋଟାଏ ପର୍ବତ ଶୀଖର ଚୂର୍ମାର ହୋଇଗଲା ! ପର୍ବତ ଉପରୁ ଛୁଟିକି ଆସୁଥିଲେ ଅଙ୍ଗୁର ଆକାରର ବର୍ଷାଜଳ ।

ରାଜୁ ଅଟକିଗଲା । କିନ୍ତୁ ପର ମୁହୂର୍ତ୍ତରେ ଦେଖିଲା, ଉଭୟ ଦିଗର ପର୍ବତ ଭିତରୁ, ଅଜସ୍ର ରନ୍ଧ୍ର ଦେଇ ପାଣି ବହି ଆସୁଛି । ସୁଧୁଁ ସୁଧୁଁ ପାଣି ତା' ଆଣ୍ଠୁ ସ୍ପର୍ଶ କଲା । ରାଜୁ ବୁଝିଲା, ସେଭଳି ଗତିରେ ପାଣି ଜମିଲେ ସମଗ୍ର ଗିରିସଙ୍କଟ ଜଳମଗ୍ନ ହେବାକୁ ବେଶି ସମୟ ଲାଗିବ ନାହିଁ ।

ପୁଣି ଥରେ ବିଦ୍ୟୁତ୍ ଯୋଗୁଁ ଦିଗ ବିଦିଗ ଝଲସିଗଲା । ରାଜୁ ଚଟାପଟ ଶିଳାଖଣ୍ଡ ଭଳି ଦିଶୁଥିବା କୌଣସି ବସ୍ତୁ ଉପରେ ଚଢି ବସିଲା । ହଠାତ୍ ସେ ବସ୍ତୁ ଡେ଼ଇଁପଡି ପ୍ରବଳ ବେଗରେ ଦୌଡିବାକୁ ଲାଗିଲା ।

ଶିଳାଖଣ୍ଡ ମନେ ହୋଇଥିବା ବସ୍ତୁଟି ଯେ କୌଣସି ପ୍ରାଣୀ, ରାଜୁ ଏହା ହୃଦୟଙ୍ଗମ କଲା । ସେଭଳି ଅପ୍ରତ୍ୟାଶିତ ଅଭିଜ୍ଞତାରେ ସେ ତ୍ରସ୍ତ ହେବା ସ୍ୱାଭାବିକ । କିନ୍ତୁ ତଳେ ମଧ୍ୟ ଭୟକୁ ପ୍ରଶ୍ରୟ ଦେବନାହିଁ ବୋଲି ସେ ଦୃଢ଼ ସଂକଳ୍ପ କରିଥିଲା । ସେ ସଂକଳ୍ପରେ ସେ ରହିଲା ଅଟଳ ।

ତେଣିକି ବିଦ୍ୟୁତ୍ ସ୍ଫୁରଣ ହେଲା ଅବିରତ । ରାଜୁ ଥରେ ତା' ବାହନର ରୂପ ଦେଖିବାକୁ ଚେଷ୍ଟା କଲା । ଜୀବଟି ସୁନାଭଳି ଝଟକୁଥିଲା । ତାହା ଯେ ବିଶାଳ ତଥା ବଳବାନ୍ ଏକଥା ବୁଝି ହେଉଥିଲା । ରାଜୁ ତାକୁ ଜାବୁଡି ଧରିଥାଏ; କାରଣ ତାକୁ ଛାଡିଦେଲେ କେଉଁଠି ଛିଟିକି ପଡିବ ସେକଥା ଜାଣିବାର ଉପାୟ ନଥିଲା ।

ଅନ୍ଧକାର ଭିତରୁ ନିଷ୍କ୍ରାନ୍ତ ହୋଇ କ୍ରମେ ଜୀବଟି ତାକୁ ଗୋଟାଏ ଅପ୍ରାକୃତିକ ଆଲୁଅ ଭିତରକୁ ନେଇ ଆସିଲା । ରାଜୁ ଜୀବଟିକୁ ଆଉ ଟିକିଏ ଭଲ ଭାବରେ ଦେଖିପାରିବା ପୂର୍ବରୁ ସମ୍ମୁଖରେ ପଡ଼ିଲା ଏକ ଆଗ୍ନେୟ ପ୍ରାଚୀର । ଚତୁର୍ଦ୍ଦିଗର ଶୀତଳ ଅନ୍ଧାର ଭିତରେ ତାହା ଦାଉ ଦାଉ ଜଳୁଥାଏ ।

"ରୁହ, ରୁହ !" ରାଜୁ ତା' ବାହନକୁ ଅନୁରୋଧ କରୁଥିଲା କି ନିର୍ଦ୍ଦେଶ ଦେଉଥିଲା ସେକଥା ନିଜେ ବୁଝିପାରୁ ନଥାଏ । ଅଗ୍ନି ଝଲକରେ ସେ ଦେଖିଲା, ବାହନଟି ଏକ ସିଂହ ।

କିନ୍ତୁ ସିଂହ ବିଜୁଳି ଗତିରେ ଛୁଟୁଥିଲା— ସିଧା ଆଗ୍ନେୟ ପ୍ରାଚୀର ଆଡ଼େ ।



"ରୁହ !" ରାଜୁ ଚିତ୍କାର କରି କହିଲା । କିନ୍ତୁ ଫଳ କିଛି ହେଲା ନାହିଁ । ସତେ ଅବା ସେ ଅଗ୍ନି ତା'ର ବିଶେଷ ଆକର୍ଷଣ, ସେମିତି ଆଗ୍ରହରେ ସିଂହ ଧାବମାନ ହେଉଥାଏ । ସେ ପ୍ରାଚୀର ଭିତରେ ପଶିଲାବେଳେ ରାଜୁ ଆଖି ବନ୍ଦ କଲା । ଉତ୍ତାପ ଅନୁଭବ କରିବା ପରିବର୍ତ୍ତେ ମୁହୂର୍ତ୍ତକ ପାଇଁ ତାର ମନେହେଲା ସେ ଯେପରି ବାଟୁଳି ବନି ଶୂନ୍ୟରେ ଉଡୁଛି । ପର ମୁହୂର୍ତ୍ତରେ ଦେଖିବା ବେଳକୁ ସେ ଗୋଟାଏ ଜଳାଶୟରେ ସନ୍ତରଣ କରୁଛି ।

ସିଂହ ଆଗ୍ନେୟ ପ୍ରାଚୀର ଟପିବା ମୁହୂର୍ତ୍ତରେ ତାକୁ ଜଳାଶୟରେ ପକାଇ ଦେଇଥିଲା । ଜଳାଶୟର ମନ୍ଦ ଲହରୀ ସବୁ ଦେହରେ ସେ ଲେଲିହାନ ଅଗ୍ନିସ୍ତମ୍ଭମାନ ପ୍ରତିଫଳିତ ହୋଇ ପରିସ୍ଥିତିକୁ କରିଥିଲା ଭୀଷଣ ସୁନ୍ଦର । ରାଜୁ ଶୀତଳ ସୁବର୍ଣ୍ଣର ଲହରୀ ରାଶି ଉପରେ ହାତ ବାଡ଼େଇ ବାଡ଼େଇ କୂଳ ଆଡ଼େ ଅଗ୍ରସର ହେଲା ।

ଗୋଟିଏ ବିଶାଳ ଗଛ ପାଣି ଉପରକୁ ନଇଁ ଆସିଥାଏ । ରାଜୁ ତା'ର ଶାଖା ପ୍ରଶାଖା ଆୟତ୍ତ କରି ତା' ଉପରକୁ ଉଠିଗଲା । ସ୍ଥଳ ଭାଗରେ ଗଛଟିର ମୂଳ ଅଂଶରେ ଗୋଟିଏ କୋଟର । ରାଜୁ ଲୋଡୁଥିଲା ଟିକିଏ ବିଶ୍ରାମ । କୋଟର ଭିତରେ ସେତିକି ମିଳିବ ବୋଲି ଆଶା କରି ସେ ଭିତରକୁ ପଶିଗଲା ।

କିନ୍ତୁ ଇଏ କ'ଣ? ସେ ତଳକୁ ତଳକୁ ଖସି ଚାଲିଥାଏ ! କେତେ ସମୟ ପର୍ଯ୍ୟନ୍ତ, ସେ



ଜାଣିପାରିଲା ନାହିଁ । ତଳେ ଗୋଡ଼ ଲାଗିଲା-ବେଳକୁ ସବୋବର କମ୍ବା ଗଛର ଚିହ୍ନବର୍ଣ୍ଣ ନାହିଁ । ଚତୁର୍ଦ୍ଦିଗରେ ମନୋରମ ଉଦ୍ୟାନ । ମଝିରେ ଏକ ମନ୍ଦିର ।

ଗୋଟିଏ ଗଛ କୋଟର ଭିତର ଦେଇ ଜଣେ ଆସି ଏକ ପୁରାପୁରି ନୂଆ ମୁଲକରେ ବା କପରି ପହଞ୍ଚି ଯାଇପାରେ ? ଗଜୁ ମନେ ମନେ ଆଶ୍ଚର୍ଯ୍ୟ ହୋଇ ଭାବୁଥାଏ ।

“କାହିଁକି ? ସେଥିରେ ଆଶ୍ଚର୍ଯ୍ୟ ହେବାର କ’ଣ ଅଛି ?” ପ୍ରଶ୍ନକର୍ତ୍ତା ଗଜୁକୁ ଚମକାଇ ଦେଲେ ।

ସେ ଦିଶୁଥିଲେ ସାଧୁ ଓ ଦୟାଳୁ । ମନ୍ଦିର ପାଖରେ ତାଙ୍କ ଛଡ଼ା ଆଉ କେହି ନଥିବା ଦୃଷ୍ଟିରୁ ଗଜୁ ନିଜ ମନେ ମନେ ଧରିନେଲା କି ସେ ପୁରୋହିତ ।

“ମୋ ମନରେ ଥିବା ପ୍ରଶ୍ନ ଆପଣ ଜାଣି ଦେଇଛନ୍ତି ଦେଖୁଛି ! ବାସ୍ତବିକ, ଗଛ କୋଟର ଭିତରେ ଥିବା ସାମାନ୍ୟ ଶୂନ୍ୟ ସ୍ଥାନ ଭିତରୁ ଏଭଳି ବ୍ୟାପକ ଉଦ୍ୟାନ, ମନ୍ଦିର କପରି ପ୍ରକଟିତ ହେଲା, ତାହାହିଁ ମୋର ବିସ୍ମୟ ।” ଗଜୁ ସାଧୁଙ୍କୁ ଅଭିବାଦନ ଜଣାଇ କହିଲା ।

“ଦେଖ ବାବୁ, ଶୂନ୍ୟର ପୁଣି ସାମାନ୍ୟ କ’ଣ, ବ୍ୟାପକ କ’ଣ ? ଶୂନ୍ୟ ସ୍ଥାନର ପୁଣି ଶ୍ରେଷ୍ଠ ବଡ଼ କ’ଣ ? ତମେ ଶୂନ୍ୟକୁ କେଉଁଥିରେ ମାପିଥାଅ ?” ସାଧୁ ପଚାରିଲେ ।

“ମାପକାଠି ବା ଫିତା ଦେଇ ମାପିବାରୁଁ — ପାରୁଁନା ? ହାତେ, ଦୁଇହାତ···”

“ତମେ ତମ ମାପ କାଠି ବା ଫିତାକୁହିଁ ମାପ, ଶୂନ୍ୟକୁ ନୁହେଁ । ଶୂନ୍ୟର ଆକାର ନାହିଁ, ମାପ ନାହିଁ । ଅଞ୍ଜୁଳାଏ ଶୂନ୍ୟ ଓ ମହାଶୂନ୍ୟରେ ଫରକ୍ ନାହିଁ । ଶୂନ୍ୟ ଏକ । ତାହାକୁ ଭାଗ ଭାଗ କରିହେବ ନାହିଁ ।”

ଗଜୁକୁ ସାଧୁଙ୍କ କଥା ପ୍ରହେଳିକା ଭଳି ମନେ ହେଲା ନାହିଁ । ତା’ର ଯେଉଁକି ଅଭିଜ୍ଞତା ହୋଇଥିଲା, ସେଥିରୁ ମନେ ହେଲା ସାଧୁଙ୍କ କଥା ଅତ୍ୟନ୍ତ ବାସ୍ତବ ।

“ହଁ, ଆପଣ ମୋ ଚିନ୍ତା ଜାଣିଦେଲେ କପରି ? ସେ ପ୍ରଶ୍ନଟିର ଉତ୍ତର ମୁଁ ପାଇନାହିଁ ।” ଗଜୁ ମନେ ପକାଇ ଦେଲା ।

"ତମର ଚିନ୍ତା ବୋଲି କିଛି ନାହିଁ । ସବୁ ଚିନ୍ତା ସାର୍ବଜନୀନ । ତମ ଭୌତିକ ଜ୍ଞାନର ଅଗୋଚରରେ ଥିବା ଶୂନ୍ୟର ଯେଉଁ ସ୍ତରରେ ତମେ ଆସି ପହଞ୍ଚି ଯାଇଛ, ଏଠାରେ ଚିନ୍ତାର ତରଙ୍ଗ ସବୁ ସିଧା ସଳଖ ଦେଖାଯାଏ — ଯେମିତି ତମେ ଦେଖ ଜଳର ତରଙ୍ଗ ବା ମେଘମାଳା ବା ଇନ୍ଦ୍ରଧନୁ । କାହିଁକି, ତମେ କ'ଣ ମୋ ଚିନ୍ତା ଦେଖିପାରୁ ନାହିଁ ?" ସାଧୁ ପ୍ରଶ୍ନ କଲେ ।

ରାଜୁ ସାଧୁଙ୍କ ଆଡ଼େ ଅନାଇଲା ଓ ସେ କ'ଣ ଭାବୁଛନ୍ତି, ତତ୍କ୍ଷଣାତ୍ ବୁଝିପାରିଲା ।

"ଆପଣ ମୋତେ ବର୍ତ୍ତମାନ ଯାହା କହିବେ ବୋଲି ଭାବୁଛନ୍ତି, ତାହା ମୁଁ ବୁଝିପାରୁଛି । ଯେଉଁ ଦେବୀଙ୍କ ସନ୍ଧାନରେ ମୁଁ ଆସିଛି, ସେ ଏହି ମନ୍ଦିରରେ ବିରାଜିତା ବୋଲି ଜଣାଇବା ସଙ୍ଗେ ସଙ୍ଗେ ଆପଣ ମୋତେ କହିବାକୁ ଚାହୁଁଥିଲେ କି ମୁଁ ତାଙ୍କୁ ମାତ୍ର ତିନୋଟି ବର ମାଗି ପାରିବି, ତହିଁରୁ ଅଧିକ ନୁହେଁ । ଠିକ୍ ତ ?" ରାଜୁ କୌତୁହଳୀ ହୋଇ ପ୍ରଶ୍ନ କଲା ।

"ଠିକ୍ । ମୁଁ ବୁଝୁଛି, ତମେ କିନ୍ତୁ ବେଶ୍ ବିଚଳିତ ବୋଧ କରୁଛ । ଗୁଶଗୋଟି ବର ମାଗିବା ଥିଲା ତମର ଉଦ୍ଦେଶ୍ୟ ।" ସାଧୁ କହିଲେ ।

"ଆପଣ ଠିକ୍ କହିଛନ୍ତି ।"

"କିନ୍ତୁ ତାହା ଅସମ୍ଭବ । ତିନିହିଁ ସୀମା ।" ସାଧୁ ଟିକିଏ ରହି ପୁଣି କହିଲେ, "କିନ୍ତୁ ବିଚଳିତ କାହିଁକି ? ଯାହା କିଛି ହୋଇଯାଏ, ତା'ର ତ ପୁଣି ଯାଥାର୍ଥ୍ୟ ଥାଏ ! ତମେ ହଠାତ୍ ସେ ସିଂହ ଉପରେ ନିଜକୁ ଦେଖି ବିଚଳିତ ବୋଧ କରିଥିଲ । କିନ୍ତୁ ସିଂହ ତମକୁ ଆଣି ନଥିଲେ ତମେ ସେ ଆଗ୍ନେୟ ପ୍ରାଚୀର ଅତିକ୍ରମ କରି ପାରିଥାନ୍ତ କି ? କୋଠର ଭିତରେ ପଶି ତଳକୁ ଖସିବା ମୁହୂର୍ତ୍ତରେ ବି ତମେ ବିଚଳିତ ବୋଧ କରିଥିଲ । କିନ୍ତୁ ସେ ଅବସ୍ଥାରେ ନ ପଡ଼ିଥିଲେ ତମେ ଏଠି ଆସି ପହଞ୍ଚି ପାରିଥାନ୍ତ କି ?" ସାଧୁ କହିଲେ ।

ରାଜୁ ତାଙ୍କ କଥାର ସତ୍ୟତା ବୁଝିଲା । (କ୍ରମଶଃ)





# ଅଦ୍ଭୁତ ମୁକୁଟ

ନିଶା ଗରଜୁଥାଏ । ସାଇଁ ସାଇଁ ଶୀତଳ ପବନ ସାଙ୍ଗକୁ ଭୁହାକୁ ଭୁହା ବର୍ଷା ହେଉଥାଏ । ଘଡ଼ଘଡ଼ ଓ ଶ୍ୱାନଶ୍ୱାପଦଙ୍କ ରଡ଼ି ମଝିରେ ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୂର୍ତ୍ତିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମାତ୍ର ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ତାକୁ କାନ୍ଧରେ ପକାଇ ଶୂନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ତୁମେ କି ପ୍ରକାର ବିଶେଷ ଚିଜର ଆକର୍ଷଣରେ ଏ ଦୁର୍ଯ୍ୟୋଗପୂର୍ଣ୍ଣ ରାତିରେ ଏଭଳି ପରିଶ୍ରମ କରୁଛ ? ଜାଣିରଖ, ଅନେକ ସମୟରେ ମଣିଷ ହେଉଛି

## ବେତାଳ କଥା



ଅଦ୍ଭୁତ ବସ୍ତୁ ହାତରେ ପାଇଗଲେ ଯେ ସେଥିରୁ କିଛି ଲାଭ କରିବ, ସେଭଳି ପ୍ରତିଶ୍ରୁତି କେହି ଦେଇ ପାରିବେ ନାହିଁ। ଗୋଟାଏ ଘଟଣା କହୁଛି, ମନଦେଇ ଶୁଣ। ଶୁଣିଲେ ଶ୍ରମଭାର ଲାଘବ ମନେ ହେବ।"

ବେତାଳ ଗପିଲା: ଅନେକ ଦିନ ତଳର କଥା। କଳିଙ୍ଗ ରାଜ୍ୟର ଏକ ଗ୍ରାମରେ ନନ୍ଦଗୁପ୍ତ ବୋଲି ଜଣେ ସାଧାରଣ ଗୃହସ୍ଥ ଥିଲେ। ତାଙ୍କର ଏକମାତ୍ର ସନ୍ତାନ ଦେବଗୁପ୍ତ ଯେପରି ବୁଦ୍ଧିମାନ ସେହିପରି ଉଚ୍ଚାକାଂକ୍ଷୀ ମଧ୍ୟ ଥିଲା। କିନ୍ତୁ ଗୋଟିଏ କଥା, କୌଣସି ବେପାର ବଣିଜ କଲାଭଳି ପୁଞ୍ଜି ସେମାନଙ୍କ ପାଖରେ ନଥିଲା।

ନନ୍ଦଗୁପ୍ତ ବୃଦ୍ଧାବସ୍ଥାରେ ଦିନେ ହଠାତ୍ ଅସୁସ୍ଥ ହୋଇ ଶଯ୍ୟା ଗ୍ରହଣ କଲେ। ଦିନେ ଦୁଇଦିନ ପରେ ଦିନେ ଉଠି ବସି ପୁଅକୁ ଡାକିଲେ ଓ କହିଲେ, "ଦେବ! ମୋର ମୃତ୍ୟୁ ସମୟ ଆସିଗଲା। ବର୍ତ୍ତମାନ ତୋତେ ଗୋଟିଏ ଅପୂର୍ବ ସମ୍ପତ୍ତିର ସନ୍ଧାନ ଦେଇଯିବି। ସେ ସମ୍ପତ୍ତି ବେଶି ଦୂରରେ ନାହିଁ, ଏହି ଘର ଭିତରେ, ସେ ସିନ୍ଦୁକ ଭିତରେ ରଖିଛି।"

"କ'ଣ ସେ ସମ୍ପତ୍ତି?" ଦେବଗୁପ୍ତ ଆଶ୍ଚର୍ଯ୍ୟ ହୋଇ ପଚାରିଲା।

"ଗୋଟିଏ ମୁକୁଟ। ସେଥିରେ ଖଚିତ ହୋଇଛି ବହୁ ମୂଲ୍ୟବାନ ରତ୍ନମାନ।"

ଦେବଗୁପ୍ତ ଆହୁରି ବିସ୍ମିତ ହୋଇ ପଚାରିଲା, "ବାପା! ଯଦି ଆମ ଘରେ ଏଭଳି ଅମୂଲ୍ୟ ସମ୍ପତ୍ତି ରହିଛି, ଆମେ ଏତେ ଦୁଃଖରେ ଚଳୁଛୁଁ କାହିଁକି? ସେ ମୁକୁଟ ବିକ୍ରି କରି ତ ଆମେ କିଛି ଉପଯୁକ୍ତ ବେପାର କରି ପାରିଥାନ୍ତୁ!"

ନନ୍ଦଗୁପ୍ତ ଦୁଃଖମିଶା ହସ ହସି କହିଲେ, "ପୁଅ, ସେ ମୁକୁଟ ବିକ୍ରି କରିବା ପାଇଁ ଉଦ୍ଦିଷ୍ଟ ନୁହେଁ। ତା'ର ଗୋଟିଏ ବିଶେଷ ଗୁଣ ଅଛି। ଯିଏ ତାକୁ ମାନିଲା ଭଳି ସାଜ ପୋଷାକ ପିନ୍ଧି, ମୁଣ୍ଡରେ ତାକୁ ଲଗାଇ ରାଜାଙ୍କ ଆଗରେ ଯାଇ ଠିଆ ହେବ, ରାଜା ତାକୁ ନିଜର ଜାମାତା କରିବେ। ମୁଁ ସାରା ଜୀବନ ପରିଶ୍ରମ କରି ମଧ୍ୟ ରାଜକୀୟ ପୋଷାକ କିଣିବା ଭଳି ପଇସା ଯୋଗାଡ଼ କରିପାରିଲି ନାହିଁ। ମୋ ସମୟର



ରାଜା ମଲେଣି । ବର୍ତ୍ତମାନ ନୂଆ ରାଜା ଯୁବକ । ତାଙ୍କର କନ୍ୟାଟିଏ ଅଛି । ତୁ ଯଦି ଦିନେ ଉପଯୁକ୍ତ ପୋଷାକ ପିନ୍ଧି, ଏ ମୁକୁଟ ଲଗାଇ ରଜାଙ୍କ ଆଗରେ ଯାଇ ପହଞ୍ଚି ପାରିବୁ, ତେବେ ରାଜ-ଜାମାତା ହେବୁ । ମୋର ଏତିକି ଆଶା ।”

ଦେବଗୁପ୍ତ ଉତ୍‌ଫୁଲ୍ଲ ହେଲା । ନନ୍ଦଗୁପ୍ତ ଏହାର ଦୁଇ ତିନିଦିନ ପରେ ପ୍ରାଣତ୍ୟାଗ କଲେ ।

ରାଜକୀୟ ପୋଷାକ ନିମନ୍ତେ ଯେତିକି ଅର୍ଥ ଲୋଡ଼ା, ରାଜାଙ୍କ ପାଖକୁ ଯିବା ସକାଶେ ଘୋଡ଼ାଟିଏ କିଣିବା ନିମନ୍ତେ ମଧ୍ୟ ତା'ର ଅଧାଅଧି ଅର୍ଥ ଲୋଡ଼ା । ଦେବଗୁପ୍ତ ସ୍ଥିର କଲା, ପ୍ରଥମେ ସେ ମୁକୁଟଟି ବନ୍ଧକ ରଖି ଟଙ୍କା ଆଣି ସେଥିରେ ବେପାର କରିବ । ଯଥେଷ୍ଟ ଲାଭ ହେବା ପରେ ମୁକୁଟ ମୁକୁଳାଇ ଆଣିବ ।

ଏହା ସ୍ଥିର କରି ସେ ପାଖ ସହରରେ ଥିବା ଜଣେ ଜହ୍ୱରି ପାଖରେ ପହଞ୍ଚିଲା । ଦଶହଜାର ଟଙ୍କାରେ ମୁକୁଟ ବନ୍ଧକ ରଖିଲା । ଏହାପରେ ସେ ଗୋଟିଏ ଜାହାଜରେ ଜବଦ୍ୱୀପ ଯାଇ ବେପାର କରି ଦୁଇବର୍ଷ ଭିତରେ କୋଡ଼ିଏ ହଜାର ଟଙ୍କା ଉପାର୍ଜନ କଲା । ତା'ପରେ ଜହ୍ୱରି ପାଖକୁ ଗଲା ।

"ଆରେ ଭାଇ, ମୁକୁଟ ତ ଥୁଆ ହୋଇଛି । କିନ୍ତୁ ସୁଧ ସହ ମୋର ପ୍ରାପ୍ୟ ତିରିଶ ହଜାର ଟଙ୍କା ଦିଅ ଓ ନିଅ ।” ଜହ୍ୱରି କହିଲା ।

ଦେବଗୁପ୍ତ ପାଖରେ ତିରିଶ ହଜାର ଟଙ୍କା ନଥିଲା । ସେ ଜହ୍ୱରିକୁ କୋଡ଼ିଏ ହଜାରରେ ସନ୍ତୁଷ୍ଟ ରହିବା ପାଇଁ ଯେତେ ଅନୁରୋଧ କଲେ ବି ଜହ୍ୱରି ଶୁଣିଲା ନାହିଁ । ସେ ଫେରି ଆସିଲା ।

ସେ ଜାହାଜରେ ଜବଦ୍ୱୀପ ସହ ବେପାର କରିବାରୁ ବିଜୟ ସିଂହ ନାମକ ଜଣେ ସ୍ଥାନୀୟ ବେପାରୀ, ଯିଏକି ଆଗେ ସେଇ ବ୍ୟବସାୟ କରୁଥିଲା, ବଡ଼ କ୍ଷତିରେ ପଡ଼ିଥିଲା ଓ ନୂଆ କରି ରତ୍ନ ବ୍ୟବସାୟ ଆରମ୍ଭ କରିଥିଲା । ବର୍ତ୍ତମାନ ଦେବଗୁପ୍ତ ଅଳ୍ପଦିନ ଭିତରେ ବେଶି ଲାଭ କରିବା ନିମନ୍ତେ ରତ୍ନ ବ୍ୟବସାୟ ଆରମ୍ଭ କଲା । ସେଥିରେ ବିଜୟ ସିଂହ ଭୀଷଣ ରାଗିଗଲା ।

ଏକବର୍ଷ ପରେ ଦେବଗୁପ୍ତ ତିରିଶ ହଜାର ଟଙ୍କାର ମାଲିକ ହେଲା । ସେ ଯାଇ ଜହ୍ୱରିକୁ



ଭେଟି ମୁକୁଟ ମୁକୁଳାଇବାକୁ ପ୍ରସ୍ତାବ ଦେବାରୁ ଜହ୍ଲରୀ କହିଲା, "ଆରେ ଭାଇ, ମୁଁ ଭାବିଲି ତମେ ଆଉ ସେ ମୁକୁଟ ନେବାରେ ଆଗ୍ରହୀ ନୁହଁ। ତେଣୁ ଦୁଇଦିନ ତଳେ ତାକୁ ବିଜୟ ସିଂହକୁ ତିରିଶ ହଜାର ଟଙ୍କାରେ ବିକିଦେଲି।"

ଦେବଗୁପ୍ତ ହତାଶ ହୋଇ ବିଜୟ ସିଂହ ପାଖରେ ପହଞ୍ଚି କହିଲା, "ମୁଁ ତିରିଶ ହଜାର ଟଙ୍କା ଦେଉଛି। ମୁକୁଟ ଦେଇଦିଅ।"

ବିଜୟ ସିଂହ ହସି କହିଲା, "ତମେ ନିଜେ ରତ୍ନ ବେପାର କରୁଛ। ରତ୍ନ ବେପାରରେ ବେପାରୀ ମାତ୍ର ଦୁଇଗୁଣ ଲାଭ କରିବାକୁ ଚାହେଁ, ତୁମେ ଏକଥା ଜାଣ ନିଶ୍ଚୟ। ତେଣୁ ଷାଠିଏ ହଜାର ଟଙ୍କା ଦିଅ, ମୁକୁଟ ନିଅ।"

ଦେବଗୁପ୍ତ କ୍ରୋଧ ଓ ହତାଶାରେ ଫେରିଗଲା। ଅନ୍ୟ ଗୋଟିଏ ସହରକୁ ଯାଇ ବେପାର କରି ସେ ଦୁଇବର୍ଷ ପରେ ଆସି ବିଜୟ ସିଂହକୁ କହିଲା, "ଲକ୍ଷେ ଟଙ୍କା ନିଅ। ମୁକୁଟ ଦିଅ।"

ବିଜୟ ସିଂହ ହସିଲା ଓ କହିଲା, "ଦେବଗୁପ୍ତ! ତମେ ଜାଣ, ମୁଁ ବି ଜାଣେ, ସେ ମୁକୁଟର ଖାଣ୍ଟି ମୂଲ୍ୟ ଏତେ ବେଶି ନୁହେଁ। ତଥାପି ତମେ ଲକ୍ଷେ ଟଙ୍କା ଦେବାକୁ ପ୍ରସ୍ତୁତ। କାହିଁକି? ନିଶ୍ଚୟ ସେ ମୁକୁଟର କିଛି ବିଶେଷ ଗୁଣ ଅଛି। ମୋତେ ସେ ରହସ୍ୟ ଖୋଲି କୁହ। ନହେଲେ ମୁଁ ମୁକୁଟ ଦେବି ନାହିଁ।"

ଦେବଗୁପ୍ତ ପାଗଳ ପ୍ରାୟ ଚିତ୍କାର କରି କହିଲା, "ସେ ରହସ୍ୟ ମୁଁ କହିବି ନାହିଁ। ତମେ ମୋର ସବୁ ସମ୍ପତ୍ତି, ଘରଦ୍ୱାର ନିଅ, କିନ୍ତୁ ମୁକୁଟ ଦିଅ।"

ବିଜୟ ସିଂହ ଆଶ୍ଚର୍ଯ୍ୟ ହେଲା, କିନ୍ତୁ ସେଥିରେ ସମ୍ମତ ହେଲା। ଦେବଗୁପ୍ତ ତାକୁ ସବୁ ଦେଇ ଦେଲା।

କିନ୍ତୁ ତା'ପରେ? ପିତା ମଲାବେଳେ ତା' ଅବସ୍ଥା ଯାହା ଥିଲା, ବର୍ତ୍ତମାନ ତାହାଠୁଁ ଶୋଚନୀୟ ଅବସ୍ଥାରେ ସେ ପଡ଼ିଲା। ରାଜକୀୟ ପୋଷାକ ଓ ଘୋଡ଼ା ତାକୁ କାହୁଁ ମିଳିବ?

ଶେଷକୁ ମୁଠିଏ ଖାଦ୍ୟ ପାଇବା ବି ତା' ପକ୍ଷରେ ସମ୍ଭବ ହେଲା ନାହିଁ। ସେ ଯାଇ ବିଜୟ ସିଂହକୁ ଭେଟି କହିଲା, "ବାବୁ, ଏଥର ତମକୁ ମୁକୁଟ ରହସ୍ୟ କହି ଦେଉଛି। ତମେ



ତାକୁ ମୁଣ୍ଡରେ ଲଗାଇ, ଉପଯୁକ୍ତ ପୋଷାକ ପିନ୍ଧି ରାଜାଙ୍କ ଆଗରେ ଠିଆ ହେଲେ ରାଜା ତମକୁ ତାଙ୍କର ଜାମାତା କରିବେ । ମୁଁ ତମକୁ ଏ ରହସ୍ୟ କହିବାର ମୂଲ୍ୟ ହିସାବରେ ମୋତେ କିଛି ଅର୍ଥ ଦିଅ ।"

"ତମକୁ ମୁଁ ସାହାଯ୍ୟ କଲେ ତମେ ପୁଣି ବେପାରରେ ମୋର ପ୍ରତିଦ୍ୱନ୍ଦୀ ହେବ । ଯାଅ । ନହେଲେ ମୋ ଚାକର ଆସି ତମକୁ ନିକାଳି ଦେବ ।" ବିଜୟ ସିଂହ କହିଲା ।

ଦେବଗୁପ୍ତ ଯାଇ କଳିଙ୍ଗର ରାଜଧାନୀରେ ପହଞ୍ଚିଲା । ସେଠି ଜଣେ ଚତୁର ବେପାରୀ ତା'ର ଅବସ୍ଥା ଦେଖି ତା' ପ୍ରତି ଦୟା କଲେ ଓ ତାକୁ ପୁଞ୍ଜି ଦେଇ ସାହାଯ୍ୟ କଲେ । ଦୁଇ ବର୍ଷ ଭିତରେ ଦେବଗୁପ୍ତ ପୂର୍ବାପେକ୍ଷା ବହୁତ ଲାଭ କଲା ଓ ସହରରେ ପ୍ରତିଷ୍ଠା ଲାଭ କଲା ।

ହଠାତ୍ ଦିନେ ଜଣେ ଭିକାରୀ ତାକୁ ସାକ୍ଷାତ୍ କରି ଖଣ୍ଡିଆ ମଇଳା କନା ଭିତରୁ ବାହାର କରି ମୁକୁଟଟିଏ ଦେଖାଇଲା ।

ଦେବଗୁପ୍ତ ଚମକି ପଡିଲା । କାରଣ ତାହା ସେହି ଅଦ୍ଭୁତ ମୁକୁଟ । "ତମେ ଏହାକୁ ପାଇଲ କେଉଁଠାରୁ ?" ସେ ପଚାରିଲା ।

ଭିକାରୀ କୋହ ଚାପି କହିଲା, "ମୋତେ ଚିହ୍ନିପାରୁ ନାହିଁ ?" ଦେବଗୁପ୍ତ ଲକ୍ଷ୍ୟ କରି ତାକୁ ଚିହ୍ନିଲା । ସେ ବିଜୟ ସିଂହ । ହଠାତ୍ ଗୋଟାଏ ପରେ ଗୋଟାଏ ଦୁର୍ବିପାକରେ ସେ ସର୍ବସ୍ୱ ହରାଇଥିଲା ।

"ବାବୁ ! ତମ ମୁକୁଟ ନିଅ । ମୋତେ ଯାହା ଖୁସି ଟଙ୍କା ଦେଇ ସାହାଯ୍ୟ କର ।" ବିଜୟ ସିଂହ କାକୁତି ମିନତି କରି କହିଲା ।

"ବିଜୟ ସିଂହ ! ମୁଁ ଅବଶ୍ୟ ତମକୁ ଚାକର ଦେଇ ବାହାର କରିଦେବି ନାହିଁ । କିନ୍ତୁ ମୁକୁଟ ମୋର ଲୋଡ଼ା ନାହିଁ । ତମେ ଏଠାରୁ ଯାଅ ।" ଏହା କହି ଦେବଗୁପ୍ତ ଘର ଭିତରକୁ ଯାଇ କବାଟ ବନ୍ଦ କରିଦେଲା ।

ବେତାଳ ଟିକିଏ ଚୁପ୍ ରହି ତା'ପରେ କଣ୍ଠସ୍ୱର ତୀବ୍ର କରି ପ୍ରଶ୍ନ କଲା, "ରାଜା ! ଦେବଗୁପ୍ତର ଏଭଳି ମତିଭ୍ରମ ହେଲା କାହିଁକି ? ବର୍ତ୍ତମାନ ସେ ରାଜକୀୟ ପୋଷାକ, ଘୋଡ଼ା, ସବୁ କିଣିବା ଭଳି ଅବସ୍ଥାରେ ଥିଲା । ଅଳ୍ପ

ଟଙ୍କାରେ ମୁକୁଟ ବି ପାଇ ଯାଇଥାନ୍ତା । ଯେଉଁ ଆଶା ନେଇ ସେ ଏତେ କଷ୍ଟ କଲା, ଯାତନା ସହିଲା, ସେ ଆଶା ପୂରଣ ହେବାଭଳି ପରିସ୍ଥିତି ସୃଷ୍ଟି ହେବା ବେଳକୁ ସେ କାହିଁକି ସୁଯୋଗକୁ ଦୂରେଇ ଦେଲା ? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ, ଉତ୍ତର ଦେବାର ଶକ୍ତିଥିବା ସତ୍ତ୍ୱେ ଯଦି ନିରୁତ୍ତର ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।”

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ କହିଲେ, “ଦେବଗୁପ୍ତ ବୁଝିପାରିଥିଲା ଯେ ସେ ମୁକୁଟ ଏକ ଅଭିଶପ୍ତ ସମ୍ପଦ । ତାକୁ ରଖି ତା’ ବାପା ଜୀବନ ସାରା ଦାରିଦ୍ର୍ୟ ଭିତରେ ରହିଲେ । ସେ ନିଜେ ମଧ୍ୟେ ମଧ୍ୟେ ବେପାରରେ ଯେତେ ଆୟ କଲେ ବି ପରେ ପରେ ଯେଉଁଭଳି ଧକ୍କା ପାଉଥାଏ, ତାହା ସେହି ମୁକୁଟ ସହ ଥିବା ଅଭିଶାପ ଯୋଗୁଁ । ତେବେ ଗୋଟିଏ ଆହୁରି ଗୁପ୍ତ ରହସ୍ୟ ହେଲା, ଖାଲି ସେ ମୁକୁଟ ଯିଏ ରଖିବ, ସେ ଯେ ଦୁଃଖ ପାଇବ, ସେକଥା ନୁହେଁ । ଜହୁଗ କିଛି ଦୁଃଖ ପାଇ ନଥିଲା । ଯିଏ ସେ ମୁକୁଟର ଗୁଣ ଜାଣି ତାକୁ ରଖିବ, ସେହି କଷ୍ଟ ଓ ଯନ୍ତ୍ରଣାର ଶିକାର ହେବ । ବିଜୟ ସିଂହ ଯେ ପର୍ଯ୍ୟନ୍ତ ମୁକୁଟର ଗୁଣ ଜାଣି ନଥିଲା, ସେ ପର୍ଯ୍ୟନ୍ତ ତା’ର କିଛି କ୍ଷତି ହେଉ ନଥିଲା, କିନ୍ତୁ ଜାଣିବା ପରେ ସେ ଭିଖାରି ହୋଇଗଲା । ଅସଲ କଥା ହେଲା, ଦେବଗୁପ୍ତ ବିଜୟ ସିଂହ ଉପରେ ପ୍ରତିଶୋଧ ନେବା ନିମନ୍ତେହିଁ ତାକୁ ଦିନେ ମୁକୁଟର ଗୁଣକଥା କହିଦେଇ ଆସିଥିଲା । ବିଜୟ ସିଂହ ଯେ ଦେବଗୁପ୍ତକୁ ମୁକୁଟ ଫେରାଇବାକୁ ଆସିଥିଲା, ତାହା ମଧ୍ୟ ସେହି ଏକା କାରଣରୁ । ବିଜୟ ସିଂହ ତାହା ଅଭିଶପ୍ତ ଚିଜ ବୋଲି ଜାଣି ସାରିଥିଲା । କିନ୍ତୁ ଦେବଗୁପ୍ତ ଆଉ ସେଥିରେ ଧରା ଦେଲାନାହିଁ ।”

ରାଜା ବିକ୍ରମଙ୍କ ଉତ୍ତରଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଝୁଲି ପଡ଼ିଲା । (କଳ୍ପିତ)





# ଶେଷ ମୁହୂର୍ତ୍ତର ସାଥି

ଅନେକ ଦିନ ତଳର କଥା । ଚୀନ୍‌ର ଗୋଟିଏ ଗାଁରେ ଥାଏ ପାବମ୍ ନାମକ ଜଣେ ଗରିବ ଯୁବକ । ସେ ନିଜ ଚେଷ୍ଟାରେ ଅନେକ ପାଠ ପଢ଼ିଥାଏ, କିନ୍ତୁ ଜଣେ ଗରିବ ଗାଉଁଲି ଯେତେ ପାଠ ପଢ଼ିଲେ ବା ତାକୁ କିଏ ଆଦର କରିବ ? ତା' କଥା ଜାଣିବ ବା କିଏ କିପରି ?

ଦିନେ ସେ ଶୁଣିଲା କି ରାଜଧାନୀରେ ରାଜ-ସରକାରରେ ଗୋଟିଏ ବଡ଼ ପଦ ଖାଲି ପଡ଼ିଛି । ଯିଏ ଗୋଟିଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବ, ସିଏ ସେହି ପଦଟି ପାଇବ ।

ପାବମ୍ ବହୁତ ଆଶା କରି ସହର ଅଭିମୁଖେ ଚାଲିଲା । ପ୍ରାୟ ଦୁଇଦିନର ବାଟ । ଘୋଡ଼ା ଗାଡ଼ି ଭଡ଼ା କରି ଯିବାଭଳି କ୍ଷମତା ତା'ର ନଥାଏ । ତେବେ ପରୀକ୍ଷା ପୂର୍ବରୁ ରାଜଧାନୀରେ ପହଞ୍ଚି ଯାଇ ପାରିବ ଏ ଆଶା ତା'ର ଥାଏ ।

ଆଉ ପ୍ରାୟ ଓଳିକର ବାଟ ଅଛି, ପାବମ୍ ଦେଖିଲା, ନିର୍ଜନ ରାସ୍ତାରେ ଗୋଟିଏ ଯୁବକ ନିଜ ଛାତିରେ ହାତ ଦେଇ ବସିଛି । ପାବମ୍ ତା' ପାଖକୁ ଯାଇ ବୁଝିଲା, ଯୁବକଟି ଛାତିରେ ଭୀଷଣ ଯନ୍ତ୍ରଣା ଅନୁଭବ କରୁଥିଲା । ପାବମ୍ ତା' ପାଖରେ ବସି ପଡ଼ିଲା ଓ ତା'କୁ ହିମ୍ମତ ଦେଲା । କିନ୍ତୁ କାହିଁରେ କିଛି ହେଲା ନାହିଁ । ଘଣ୍ଟାଏ ପରେ ଯୁବକଟି ମୃତ୍ୟୁ ବରଣ କଲା ।

ପାବମ୍ ଏବେ କରିବ କ'ଣ ? ଆଖପାଖରେ ଜଣେ ବି ଲୋକ ତା' ଆଖିରେ ପଡ଼ିଲେ ନାହିଁ । ସେ ଦେଖିଲା, ମୃତ ଯୁବକର ପୋଷାକ ମୁଣିରେ ବହୁତ ସ୍ୱର୍ଣ୍ଣମୁଦ୍ରା ରହିଛି । ସେ ସେଥିରୁ ମାତ୍ର ଗୋଟିଏ ବାହାର କରିନେଇ ପାଖ ଗାଁକୁ ଯାଇ ଗୋଟିଏ କବର ବାକ୍ସ କିଣିଲା ଓ ତାକୁ ଧରି ପୁଣି ରାସ୍ତା ପାଖକୁ ଲେଉଟି ଆସି ଯୁବକକୁ ବାକ୍ସରେ ଭର୍ତ୍ତି କରି ମାଟି ଖୋଳି ସମାଧି

ଦେଲା । ସେ ସମାଧି ଉପରେ ଗୋଟିଏ ଫୁଲତୋଡ଼ା ରଖି କହିଲା, "ହେ ବିଦେହୀ ଆତ୍ମା, ମୋ ଦେଇ ଯାହା ହୋଇ ପାରନ୍ତା, ମୁଁ ତାହା କଲି । ତ୍ରୁଟି ଥିଲେ କ୍ଷମା କର ।" ଏହା ପରେ ସେ ସହରରେ ଯାଇ ପହଞ୍ଚିଲା । କିନ୍ତୁ ସେତେବେଳକୁ ପରୀକ୍ଷା ଆରମ୍ଭ ହୋଇଗଲାଣି ।

ଦୀର୍ଘନିଃଶ୍ୱାସ ଛାଡ଼ି ସେ ପୁଣି ଗାଁ ଅଭିମୁଖେ ଫେରିଲା । ସେ ଲକ୍ଷ୍ୟ କଲା, ଗୋଟିଏ ଘୋଡ଼ା ତା' ପଛେ ପଛେ ଚାଲିଛି । ଜନହୀନ ପ୍ରାନ୍ତର ଭିତରେ ସେ ସେହି ଘୋଡ଼ା ଉପରେ ବସି ପଡ଼ିବା ମାତ୍ରେ ଘୋଡ଼ା ତାକୁ ନେଇଯାଇ ଗୋଟିଏ ବିରାଟ ଘର ଆଗରେ ପହଞ୍ଚାଇ ଦେଲା । ସେ ଘରର ଲୋକମାନେ ଦୌଡ଼ି ଆସିଲେ ।

"ତମେ ଏ ଘୋଡ଼ା ପାଇଲ କେଉଁଠାରୁ ?" ସେମାନେ ସନ୍ଦେହପୂର୍ଣ୍ଣ କଣ୍ଠରେ ପ୍ରଶ୍ନ କଲେ । ପାବମ୍ ସବୁ କହିଗଲା । ସେମାନଙ୍କ କଥାବାର୍ତ୍ତାରୁ ସେ ବୁଝିଲା, ଏ ଘୋଡ଼ା ସେହି ମୃତ ଯୁବକର । ଘୋଡ଼ାଟି ନିଶ୍ଚୟ ପାବମ୍‌କୁ ଅନୁସରଣ କରି ସହର ଭିତରକୁ ଯାଇଥିଲା ଓ ପୁଣି ସହର ଭିତରୁ ବାହାରି ଆସିଥିଲା । ପାବମ୍ ତାକୁ ଲକ୍ଷ୍ୟ କରି ନଥିଲା । ଯୁବକର ପରିବାର ଓ ଗ୍ରାମବାସୀମାନେ ଧରିନେଇଥିଲେ ଯେ ଯୁବକକୁ କେହି ଟଙ୍କା ଲୋଭରେ ହତ୍ୟା କରିଛି । ସେମାନେ ପାବମ୍‌କୁ ନେଇ ପଡ଼ିଆ ଭିତରକୁ ଗଲେ ଓ ତଥା ସ୍ଥାନରେ ଖୋଳି ଯୁବକର ମୃତ ଦେହ ପାଇଲେ । ପାବମ୍ ଯାହା କହିଥିଲା, ସେହି ଅନୁସାରେ ଦେଖାଗଲା ବାସ୍ତବିକ ଯୁବକ ସାଥିରେ ନେଇଯାଇଥିବା ଅର୍ଥରୁ ମାତ୍ର ଗୋଟିଏ ମୁଦ୍ରା କମ୍ ଅଛି ।

ପାବମ୍‌ର ସାଧୁତାରେ ସମସ୍ତେ ବିସ୍ମିତ ହେଲେ । ଯୁବକର ପିତାମାତା କହିଲେ, "ତମେ ଆମ ପୁଅର ଶେଷ ସମୟର ସାଥି । ଏଣିକି ତମେହିଁ ଆମର ପୁଅ ।"

ପାବମ୍ ତାହା ସ୍ୱୀକାର କଲା । କାଳକ୍ରମେ ପାବମ୍ ଜଣେ ମହତ୍ ଓ ଜ୍ଞାନୀ ବ୍ୟକ୍ତି ଭାବରେ ଚୀନ୍‌ର ସେ ପ୍ରଦେଶରେ ଖ୍ୟାତି ଲାଭ କଲା ।



ଜହ୍ନମାମୁଁ କ୍ରୋଡ଼ପତ୍ର :

# ଜ୍ଞାନ ସମ୍ଭାର

ଏ ମାସର ଐତିହାସିକ ବ୍ୟକ୍ତି

## ଗୁରୁ ନାନକ



୧୪୬୯ ମସିହାର କାର୍ତ୍ତିକ (ନଭେମ୍ବର) ପୂର୍ଣ୍ଣିମା ଦିନ ପଞ୍ଜାବର ଯେଉଁ ଗ୍ରାମରେ ନାନକ ଜନ୍ମଗ୍ରହଣ କରିଥିଲେ, ଆଜି ତାଙ୍କର ସ୍ମୃତିରେ ସେ ଗ୍ରାମର ନାମ ନାନକାନା ।

ବିଦ୍ୟାଳୟରେ ତାଙ୍କୁ ଶିକ୍ଷକ ଯେତେ ପ୍ରଶ୍ନ ପଚାରୁଥିଲେ, ତାହାଠୁଁ ଅଧିକ ପ୍ରଶ୍ନ ସେ ଶିକ୍ଷକଙ୍କୁ ପଚାରୁଥିଲେ । ସାଧାରଣତଃ ଈଶ୍ୱର କ'ଣ, ସତ୍ୟ କ'ଣ ଏହିସବୁ ଥିଲା ତାଙ୍କର ପ୍ରଶ୍ନ । ତାଙ୍କୁ ଯେତେବେଳେ ଚଉଦ ବର୍ଷ, ତାଙ୍କ ବାପା ତାଙ୍କୁ ବାହା କରାଇଦେଇ ସୁଲତାନପୁର ପଠାଇ ଦେଲେ । ସେଠାରେ ସେ ଚାକିରୀ କରି ଯାହା ଦରମା ପାଉଥିଲେ, ତା'ର ଅଧିକାଂଶ ଗରିବ ଲୋକଙ୍କ ଭିତରେ ବିତରଣ କରି ଦେଉଥିଲେ । ଯାହାହେଉ, ସେ ଅଳ୍ପଦିନ ପରେ ଚାକିରୀ ଛାଡ଼ି ଏଣେ ତେଣେ ବୁଲି ଲୋକଙ୍କୁ ବୁଝାଇବାକୁ ଲାଗିଲେ ଯେ ଭଗବାନ ଏକ ଏବଂ ତାଙ୍କ ଆଗରେ ସବୁ ମଣିଷ ସମାନ । ସତ୍ୟ କୌଣସି ଗୋଟିଏ ଧର୍ମର ଏକଚାଟିଆ ସମ୍ପଦ ନୁହେଁ । ଅନ୍ୟର ବିଶ୍ୱାସ ବା ଧର୍ମକୁ ସମ୍ମାନ ଦେବା ସଙ୍ଗେ ସଙ୍ଗେ ପରମେଶ୍ୱରଙ୍କ ଉପରେ ଚୂଡ଼ାନ୍ତ ବିଶ୍ୱାସ ରଖିବା ହେଲା ନାନକଙ୍କ ଶିକ୍ଷାର ମୂଳ କଥା ।

ସେ ଶେଷ ଜୀବନରେ ବ୍ୟାସ ନଦୀ କୂଳରେ କର୍ତ୍ତାରପୁରଠାରେ ରହିଥିଲେ । ତାଙ୍କ ପ୍ରଚାରିତ ମତ ହେଲା ଶିଖ ଧର୍ମର ଭିତ୍ତି । ସତୁରୀ ବର୍ଷ ବୟସରେ ସେ ପ୍ରାଣ ତ୍ୟାଗ କଲେ । ଉଭୟ ହିନ୍ଦୁ ଓ ମୁସଲମାନମାନେ ନିଜ ନିଜ ମତ ଅନୁସାରେ ତାଙ୍କ ସତ୍କାର କରିବାକୁ ଜିଦ କରୁଥାନ୍ତି । କିନ୍ତୁ ଆବରଣ କାଢ଼ି ଦେବା ବେଳକୁ କେତେକ ଫୁଲଛଡ଼ା ଭିତରେ ଆଉ କିଛି ନାହିଁ । ସେହି ଫୁଲ ରାଶିକୁ ଦୁଇ ଦଳ ଭାଗ କରିନେଲେ ।

## ସେ କିଏ ?

ଅନ୍ଧାର ରାତି । ଯୁବକଟିଏ ଏକାକୀ ହ୍ରଦ କୂଳରେ ଥିବା କାଳୀ ମନ୍ଦିରରେ ପଶି କାନ୍ଦି କାନ୍ଦି ଦେବୀଙ୍କୁ କହିଲା, "ଆଜି ଯେଉଁ ଅପମାନ ପାଇଲି, ତା'ପରେ ମୋର ଜୀବନ ପ୍ରତି କୌଣସି ଆକର୍ଷଣ ନାହିଁ । ବର୍ତ୍ତମାନ ମୁଁ ଏଇ ହ୍ରଦରେ ପ୍ରାଣ ହାରିବି ।"

"ସେ କାମ କର ନା । ଆତ୍ମହତ୍ୟା କଲେ ଆହୁରି ଭୀଷଣ କଷ୍ଟ ଭୋଗିବୁ ।" ଏକ ଦିବ୍ୟ କଣ୍ଠସ୍ୱର ଶୁଣାଗଲା ।

"ମା ! ତା'ହେଲେ ମୋତେ ପଣ୍ଡିତ କରିଦିଅ ।" ଯୁବକ ପ୍ରାର୍ଥନା କରି କହିଲା ।

"ପୁଅ ! ତୋ ଚେତନା ଏତେ କମ୍ ଯେ ପଣ୍ଡିତ ହେବା ପାଇଁ ଅନ୍ତତଃ ସାତ ଜନ୍ମ ଲାଗିବ ।" ଦିବ୍ୟ କଣ୍ଠସ୍ୱର ଉତ୍ତର ଦେଲା ।

"ତା'ହେଲେ ମୁଁ ମରିବି ।" ଯୁବକଟି ଏହା କହି ହ୍ରଦକୁ ଡେଇଁ ପଡ଼ିବା ପାଇଁ ପ୍ରସ୍ତୁତ ହେଲା ।

ଦେବୀ ତାକୁ ଶାନ୍ତ କଲେ । ସେଇଠି ସାତଥର ମରି ଯୁବକ ସାତଥର ପ୍ରାଣ ପାଇଲା । ଏହିପରି ଭାବରେ ସାତ ମୁହୂର୍ତ୍ତରେ ସାତଜନ୍ମ ବିତାଇ ସେ ପଣ୍ଡିତ ବନି ମନ୍ଦିର ବାହାରକୁ ଆସିଲା ।

କିମ୍ବଦନ୍ତୀର ଏ ଯୁବକ କିଏ ?

(ଅନ୍ତିମ ପୃଷ୍ଠାରେ ଉତ୍ତର)

# ଆକର୍ଷଣ





### ପ୍ରଣାଳୀ

ଗୋଟିଏ ପିଙ୍ଗ୍‌ପଙ୍ଗ୍ ବଲ୍‌କୁ ଟେପ୍ (ଅଠା କାଗଜ) ଦ୍ୱାରା ଖଣ୍ଡିଏ ସୂତାରେ ସଂଲଗ୍ନ କର । ବଲ୍‌ଟିକୁ ଜଳ ଧାରା ମୁହଁରେ ଧର । ନିଜ ହାତକୁ ଧୀରେ ଧୀରେ ଜଳଧାରର ଗୋଟାଏ କଡକୁ ନେଇଯାଅ । ବଲ୍‌ଟିକୁ ଜଳଧାରା ଆକର୍ଷଣ କଲାଭଳି ମନେ ହେଉଛି କି ? ବଲ୍‌ଟି ଜଳଧାରା ଭିତରେ ଅଧାଅଧି ରହୁଛି କି ?

**କାହିଁକି ଏପରି ହେଉଛି :**

ବଲ୍ ନିଶ୍ଚୟ ଜଳଧାରା ଦ୍ୱାରା ଆକର୍ଷିତ ହେବାର ଦେଖାଯିବ । କାରଣ ଜଳଧାରା ବଲ୍‌ଟି ଉପରେ ଯେତିକି ଚାପ ଦେବ, ତାଠୁଁ ଅଧିକ ଚାପ ଦେବ ପବନ-ବଲ୍‌ଟିର ଅନ୍ୟ ଅଂଶ ଉପରେ ।

ଯେତେବେଳେ ପାଣି ଅଧିକ ବେଗରେ ପଡ଼ିବ, ସେତେବେଳେ ବଲ୍‌ଟିକୁ ଜଳଧାରା ଭିତରୁ ବାହାର କରିନେବା ପାଇଁ ବେଶି ଜୋର୍ ଦେବାକୁ ହେବ କି ? ପାଣିର ବେଗ କମିଗଲେ କ'ଣ ହେବ ? ସବୁଠୁଁ ଅଧିକ ବେଗରେ ପାଣି ଛାଡ଼ିଲେ ତହିଁ ଭିତରୁ ବଲ୍‌କୁ ବାହାର କରିନେବାକୁ କେତେବେଳ ଲାଗିବ ?

ପିଙ୍ଗ୍‌ପଙ୍ଗ୍ ଭଳି ଅନ୍ୟ ବଲ୍‌ମାନଙ୍କ କ୍ଷେତ୍ରରେ ଠିକ୍ ଏଇଆ ହେବ କି ?" ପରୀକ୍ଷା କରି ଦେଖ ।

ଯଦି ରାସ୍ତା କଡ଼ରେ ଗୋଟିଏ ପବନ-ଭର୍ତ୍ତି ବେଲୁନ୍ ବା ଖଣ୍ଡିଏ କାଗଜ ପଡ଼ିଥିବ, ତେବେ ସେ ରାସ୍ତାଦେଇ କାର୍‌ଟିଏ ଯିବା ମାତ୍ରେ ବେଲୁନ୍ ବା କାଗଜ ସେଆଡ଼େ ଆକର୍ଷିତ ହୋଇଯିବାର ସମ୍ଭାବନା ଅଛି । କାହିଁକି, ସେକଥା ଏବେ ବୁଝି ହେଉଛି ତ ?

## ଜଗତର ବିସ୍ମୟ

# ପିରାମିଡ୍

ପାଞ୍ଚ ହଜାର ବର୍ଷ ତଳେ ତଥା ତା' ଆଗରୁ ମଧ୍ୟ ଇଜିପ୍ଟ ବା ମିଶର ଦେଶ ଉପରେ ଯେଉଁ ରାଜା-ମାନେ ରାଜୁତି କରୁଥିଲେ, ସେମାନଙ୍କୁ ଫାରୋ ବୋଲି କୁହାଯାଉଥିଲା । ଫାରୋ ମରଗଲେ ତାଙ୍କ ଦେହ ଉପରେ ଏକ ପ୍ରକାର ଔଷଧ ବୋଳି ତାକୁ ଗୋଟିଏ ଶବାଧାର (କଫିନ୍)ରେ ରଖାଯାଉଥିଲା । ସେ ଶବାଧାର ଯେଉଁ କବରରେ ରହୁଥିଲା, ତାହା ଉପରେ ବିଶାଳ ପଥର ଇମାରତ୍ ନିର୍ମାଣ କରା ହେଉଥିଲା । ଏହାହିଁ ପିରାମିଡ୍ । ଏହାର ଭିତ୍ତି ଚତୁଷ୍କୋଣ ବିଶିଷ୍ଟ । ଉପରକୁ କ୍ରମେ ଏହାର ଚତୁଷ୍କାନ୍ତ ସରୁ ହୋଇ ଗୋଟିଏ ବିନ୍ଦୁରେ ଶେଷ ହୋଇଥାନ୍ତି ।

କାଇରୋ ନଗରୀର ଅଦୂରରେ ତିନୋଟି ବଡ଼ ପିରାମିଡ୍ ଦେଖିବାକୁ ମିଳେ । ତହିଁ ଭିତରେ ସବୁଠୁଁ ବୃହତ୍ ଓ ପୁରାତନ ହେଲା ଫାରୋ ଖୁଫୁଙ୍କ କବର ଉପରେ ନିର୍ମିତ ପିରାମିଡ୍ । ଏ ଗୋଟିକ ମଣିଷ ଦ୍ୱାରା ନିର୍ମିତ ସବୁଠାରୁ ବଡ଼ ଇମାରତ୍ । ଯେତିକି ସ୍ଥାନ ଏହା ମାଡ଼ି ବସିଛି, ତହିଁ ଭିତରେ ରୋମର ସେଣ୍ଟ ପିଟର୍ସ ଗୀର୍ଜା, ଲଣ୍ଡନ୍‌ର ଓ୍ୱେଷ୍ଟମିନ୍‌ଷ୍ଟାର ଗୀର୍ଜା ପାଇଁ ଥାନ ହୋଇଯାନ୍ତା । ୪,୭୦୦ ବର୍ଷ ତଳେ ଏକ ଲକ୍ଷ ଶ୍ରମିକ ଓ ମିସ୍ତ୍ରୀ କୋଡ଼ିଏ ବର୍ଷ କାଳ ଲାଗି ଏ ପିରାମିଡ୍ ନିର୍ମାଣ କରିଥିଲେ ।

ଆଜିର ଜଣେ ଲେଖକ କହିଛନ୍ତି, ଏ ଯୁଗର ସବୁ ବିଜ୍ଞାନ ଓ ବୈଷୟିକ ବିଦ୍ୟା ଖଟାଇ ମଧ୍ୟ ମଣିଷ ଖୁଫୁଙ୍କ ପିରାମିଡ୍ ଭଳି ଇମାରତ୍‌ଟିଏ ବନାଇ ପାରିବ କି ନା ସନ୍ଦେହ ।



# ମୋଜେସ୍‌ଙ୍କ ଅଭିଯାନ

ହଜାର ହଜାର ବର୍ଷ ତଳର କଥା । ମିଶରର ରାଜା ଫାରୋଙ୍କର କନ୍ୟା ନୀଳ ନଦୀରେ ସ୍ନାନ କରୁଥିଲେ । ହଠାତ୍ ସେ ଦେଖିଲେ, ଗୋଟିଏ ପେଡ଼ି ଭାସି ଚାଲିଛି; ରାଜକନ୍ୟା ତାକୁ ଉଦ୍ଧାର କରି ଦେଖିଲେ ତହିଁ ଭିତରେ ତିନିମାସର ପୁଅ ଛୁଆଟିଏ ।

ସେତେବେଳେ ମିଶରରେ ପ୍ରବାସୀ ଭାବରେ ରହୁଥିବା ୟିହୁଦୀମାନଙ୍କ ସଂଖ୍ୟା ବଢ଼ି ଚାଲିଥାଏ । ତେଣୁ ଫାରୋଙ୍କ ହୁକୁମ ଅନୁସାରେ ୟିହୁଦି ପରିବାରରେ ପୁଅଟିଏ ଜନ୍ମ ହେବା ମାତ୍ରେ ତାକୁ ତାଙ୍କ ସୈନ୍ୟମାନେ ହତ୍ୟା କରୁଥିଲେ । ପୁଅକୁ ରକ୍ଷା କରିବା ନିମନ୍ତେ କୌଣସି ମାଆ ତାକୁ ନଦୀରେ ଭସାଇ ଦେଇଛି ବୋଲି ରାଜକନ୍ୟା ବୁଝିଲେ ।

ସେ ପୁଅର ଭଉଣୀ ଦୂରରେ ଥାଇ ସବୁ ଦେଖୁଥିଲା । ସେ ଆସି ବିନେ ରାଜକନ୍ୟାଙ୍କୁ ପଚାରିଲା, "ପିଲାଟି ପାଇଁ ପରିଚାରିକା



ଦରକାର ?" ରାଜକନ୍ୟା ପିଲାଟିକୁ ପାଳିବାର ଦାୟିତ୍ୱ ସେହି ଝିଅକୁ ଦେଲେ । ଭଉଣୀ ତା' ଛୋଟ ଭାଇକୁ ନିଜ ଘରକୁ ମାଆ ପାଖକୁ ନେଇ ଆସିଲା—କିନ୍ତୁ ପୁଅଟି ଆସିଲା ଖୋଦ୍ ରାଜକନ୍ୟାଙ୍କ ପୋଷ୍ୟପୁତ୍ର ରୂପେ ! ଅତଏବ ସେ ନିର୍ଭୟରେ ବଢ଼ିଲା ।

ୟିହୁଦିମାନଙ୍କ ଉପରେ ମିଶର ବାସୀମାନେ ପ୍ରବଳ ଅତ୍ୟାଚାର କରୁଥିଲେ । ସେମାନଙ୍କୁ କ୍ରୀତଦାସ ରୂପେ ଖଟାଇବା ସଙ୍ଗେ ସଙ୍ଗେ ସାମାନ୍ୟ ଭୁଲ୍ ତ୍ରୁଟି ପାଇଁ ଯନ୍ତ୍ରଣା ବା ମୃତ୍ୟୁଦଣ୍ଡ ଦେଉଥିଲେ । ବାଇବେଲ୍‌ରୁ ଜଣାଯାଏ, ଦିନେ ଏକ ନିର୍ଜନ ସ୍ଥାନରେ ମୋଜେସ୍ ଦେଖିଲେ ଗୋଟିଏ ବୁଦାରେ ନିଆଁ ଜଳୁଛି ଅଥଚ ବୁଦାର କିଛି କ୍ଷତି ହେଉନାହିଁ । ସେହି ନିଆଁରୁ ଆବିର୍ଭୂତ ହେଲେ ଈଶ୍ୱର । ସେ ମୋଜେସ୍‌ଙ୍କୁ କହିଲେ କି ସେ ୟିହୁଦି ଜାତିର ନେତୃତ୍ୱ ନିଅନ୍ତୁ । ଈଶ୍ୱର ମୋଜେସ୍‌ଙ୍କୁ ଏପରି କିଛି ଗୁଣ ଦେଲେ, ଯାହା ଫଳରେ ସେ ଅନ୍ୟମାନଙ୍କ ଭିତରେ ବିଶ୍ୱାସ ଉପୁଜାଇ ପାରିବେ ।

ମୋଜେସ୍ ଫାରୋଙ୍କୁ କହିଲେ କି ତାଙ୍କ ଲୋକଙ୍କୁ ମିଶର ଛାଡ଼ି ଚାଲି ଯିବାପାଇଁ ଅନୁମତି ମିଳୁ । ଫାରୋ କିନ୍ତୁ ଶୁଣିଲେ ନାହିଁ । ମୋଜେସ୍ ଗୋଟାଏ ପରେ ଗୋଟାଏ ଅଦ୍ଭୁତ କାଣ୍ଡ କଲେ । ତାଙ୍କ କହିବା ଅନୁସାରେ ନୀଳ ନଦୀର ପାଣି ରକ୍ତ ହୋଇଗଲା ଦେଶଯାକ ବେଙ୍ଗ, ଝିଣ୍ଟିକା ଓ ଉକୁଣୀରେ ଭର୍ତ୍ତି ହୋଇଗଲା । ଭୀଷଣ ବାତ୍ୟାରେ ଦେଶର ଫସଲ ଧ୍ୱଂସ ହେଲା । ପରେ ପରେ ଦେଖାଦେଲା ମହାମାରୀ । ପୁଣି ମିଶରୀୟ ପରିବାର ସବୁର ପ୍ରଥମ ସନ୍ତାନମାନ ମରିବାକୁ ଲାଗିଲେ ।



ତେବେ ଯାଇ ଫାରୋ ୟିହୁଦିମାନଙ୍କୁ ମିଶର ଛାଡ଼ିଯିବା ପାଇଁ ଅନୁମତି ଦେଲେ ।

ମୋଜେସ୍ ସେମାନଙ୍କୁ ଇସ୍ରାଏଲ ଅଭିମୁଖେ ନେଇଗଲେ । ଆଗରେ ପଡ଼ିଲା ଲୋହିତ ସାଗର । ତା'ର ଜଳରାଶି ଦୁଇଭାଗ ହୋଇ ଯାଇ ମୋଜେସ୍ ଓ ତାଙ୍କ ଲୋକଙ୍କୁ ସେପାରିକୁ ଯିବାକୁ ବାଟ ଦେଲା, କିନ୍ତୁ ପରେ ସେମାନଙ୍କୁ ବାଧ୍ୟ କରି ମିଶର ଫେରାଇ ନେବାକୁ ଆସୁଥିବା ଫାରୋଙ୍କ ସୈନ୍ୟମାନେ ସେ ବାଟରେ ଗୋଡ଼ ଦେବା ମାତ୍ରେ ଜଳରାଶି ସେମାନଙ୍କ ଉପରେ ଉଜାଡ଼ି ପଡ଼ିଲା । ସେମାନଙ୍କର ସଳିଳ ସମାଧି ହେଲା ।

ୟିହୁଦିମାନେ ଇସ୍ରାଏଲ୍‌ରେ ପହଞ୍ଚିଲେ, କିନ୍ତୁ ସେ ଦେଶର ସୀମାନ୍ତରେ ପାଦଦେବା ପୂର୍ବରୁ ମୋଜେସ୍ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

ଏହି ବୃତ୍ତାନ୍ତ ଆଂଶିକ ଇତିହାସ ବୋଲି ବିଶ୍ୱାସ କରାଯାଏ । ଏହି ଘଟଣାରୁ ଜନ୍ମନେଲା ଏକ ନୂତନ ଦେଶ ।

**ଭାରତର ଇତିହାସ ପ୍ରତି ଦୃଷ୍ଟିପାତ କରାଯାଉ**



୧. କେଉଁ ପ୍ରାଚୀନ ନଗରୀର ନାମ ଦୁଇଟି ନଈର ନାମରୁ ଆସିଛି ?
   (କ) ସେ ଦୁଇ ନଈର ନାମ କ'ଣ ?
   (ଖ) କେଉଁ ବୃହତ୍ତର ନଦୀ ସହ ସେ ଦୁହେଁ ଯୁକ୍ତ ?
   (ଗ) ସେ ନଗରୀ କାହିଁକି ବିଖ୍ୟାତ ?

୨. କେଉଁ ଭାରତ-ବିଜେତା ତାଙ୍କ ମାତୃବଂଶ ଅନୁସାରେ ନିଜ ପରିଚୟ ବହନ କରୁଥିଲେ ?
   (କ) କେବେ ସେ ଭାରତକୁ ଆସିଥିଲେ ?
   (ଖ) ସେ ପ୍ରତିଷ୍ଠା କରିଥିବା ବଂଶର ନାମ କ'ଣ ?
   (ଗ) ତାଙ୍କର ସବୁଠୁଁ ବିଖ୍ୟାତ ପୂର୍ବପୁରୁଷଙ୍କ ନାମ କ'ଣ ?

୩. ଆକବରଙ୍କ ରାଜତ୍ୱର ବିବରଣୀ ଦେଇଥିବା ବହିର ନାମ କ'ଣ ?
   (କ) କିଏ ତା'ର ଲେଖକ ?
   (ଖ) ସେ ଲେଖକଙ୍କର ଅନ୍ୟ ବହିର ନାମ କ'ଣ ? ପ୍ରଥମ ବହିଠୁଁ ତା'ର ପାର୍ଥକ୍ୟ କ'ଣ ?

୪. ପ୍ରାଚୀନ କାଳରେ କେଉଁ କେଉଁ ବିଖ୍ୟାତ ରାଜବଂଶ ଦକ୍ଷିଣ ଭାରତ ଉପରେ ରାଜୁତି କରୁଥିଲେ ?

## ବିଜ୍ଞାନ, ଆବିଷ୍କାର, ଉଦ୍‌ଭାବନ ତଥ୍ୟ

୧. ନିଅନ୍ ଆଲୁଅର ଉଦ୍‌ଭାବନ କେବେ ଓ କାହାଦ୍ୱାରା ହୋଇଥିଲା ?

୨. ଗୋଟାଏ ବଜ୍ରପାତରେ କେତେ ବିଦ୍ୟୁତ୍ ଖର୍ଚ୍ଚ ହୁଏ ?

୩. ବିଶ୍ୱଜଗତର ବୟସ କେତେ ?

୪. ଦୂରବୀକ୍ଷଣର ଉଦ୍‌ଭାବନ କେବେ ଓ କାହାଦ୍ୱାରା ହୋଇଥିଲା ?

୫. ପୃଥିବୀଠାରୁ ସୂର୍ଯ୍ୟ ସବୁବେଳେ ସମାନ ଦୂରତ୍ୱରେ ଥାଏ କି ?

୬. ଉଡ଼ନ୍ତା ଥାଳିଆ କେବେ କେବେ ବେଶି ସଂଖ୍ୟାରେ ଦେଖାଯା'ନ୍ତି କି ?

୭. କେଉଁ ଦେଶରେ ସର୍ବାଧିକ ସଂଖ୍ୟକ ସମ୍ବାଦପତ୍ର ପ୍ରକାଶ ପାଏ ?

୮. ମଣିଷ ହାତର ଏକ ବର୍ଗଇଞ୍ଚ ସ୍ଥାନରେ କେତେ ତନ୍ତୁ ରହିପାରେ ?

୯. ପାଣି ନ ପିଇ ଓଟଠାରୁ ଅଧିକ କାଳ ରହିପାରେ କେଉଁ ପ୍ରାଣୀ ?

୧୦. କେଉଁ ପ୍ରାଣୀର ଗନ୍ଧ ମାଇଲଏ ଦୂରରୁ ବାରିହୁଏ ?

(.........ଉତ୍ତର ପୃ : ୮ରେ)




୧. ସବୁଠାରୁ ଅଧିକ ଲୋକ କେଉଁ ଭାରତୀୟ ପୋଥି ପଢ଼ନ୍ତି ?
   (କ) ସେ ପୋଥିରେ କେତେ ଅଧ୍ୟାୟ ରହିଛି ?
   (ଖ) ସେ ପୋଥି କେଉଁ ବହିର ଅଂଶ ବିଶେଷ ?
   (ଗ) ତା'ର ଲେଖକ କିଏ ?

୨. କେଉଁ ବିଖ୍ୟାତ ଭାରତୀୟ ନାଟ୍ୟକାର ଓ କବିଙ୍କ ମୂଳ ନାମ ଅଜ୍ଞାତ ?
   (କ) ସେ ମୂଳ ନାମ ବଦଳରେ ଅନ୍ୟ ନାମ ନେଲେ କାହିଁକି ?
   (ଖ) ତାଙ୍କ ରଚିତ ନାଟକ ସବୁ କ'ଣ ?
   (ଗ) ତାଙ୍କ ରଚିତ କାବ୍ୟ ସବୁ କ'ଣ ?

୩. ଗୋଟିଏ ପ୍ରାଚୀନ ବହି ଅନୁସାରେ ଜଣେ ନାରୀର ଅଭିଶାପରେ ଏକ ସହର ଜଳିଯାଇଥିଲା । କେଉଁ ସହର ?
   (କ) ସେ ନାରୀ କିଏ ?
   (ଖ) ସେ ବହିର ନାମ କ'ଣ ? ଲେଖକ କିଏ ? କେଉଁ ଭାଷାରେ ଓ କେବେ ତାହା ଲେଖା ହୋଇଥିଲା ?

.........ଉତ୍ତର ପୃ : ୮ରେ

### ଗୋଟିଏ ଶବ୍ଦ : ଭାରତର ସବୁ ଭାଷାରେ !

ଓଡ଼ିଆ : ଛାତ୍ର ; ଅସମିୟା : ଛାତ୍ର ; ବଙ୍ଗଳା : ଛାତ୍ର ; ଇଂରାଜୀ : ଷ୍ଟୁଡେଣ୍ଟ୍ ; ଗୁଜରାଟି : ବିଦ୍ୟାର୍ଥୀ ; ହିନ୍ଦି : ଛାତ୍ର ; କନ୍ନଡ଼ : ବିଦ୍ୟାର୍ଥୀ ; କାଶ୍ମୀରୀ : ସାଗିର୍ଦ ; ମାଲୟାଲମ : ବିଦ୍ୟାର୍ଥୀ ; ମାରାଠି : ବିଦ୍ୟାର୍ଥୀ ; ପଞ୍ଜାବୀ : ବିଦ୍ୟାର୍ଥୀ ; ସଂସ୍କୃତ : ବିଦ୍ୟାର୍ଥୀନ୍ ; ସିନ୍ଧି : ସାଗିର୍ଦ୍ ; ତାମିଲ୍ : ମାନବନ ; ତେଲୁଗୁ : ବିଦ୍ୟାର୍ଥୀ ; ଉର୍ଦ୍ଦୁ : ତାଲିବିଲ୍ମ୍ ।

# ତୁମେ କ'ଣ ନିଶ୍ଚିତ

* ଯେ ଆର୍ଯ୍ୟମାନେ ଭାରତ ବାହାରୁ ଭାରତ ଭିତରକୁ ଆସିଥିଲେ ?
* ଯେ କଲମ୍ବସ୍‌ହିଁ ଆମେରିକାରେ ପହଞ୍ଚିଥିବା ପ୍ରଥମ ବିଦେଶୀ ?
* ଯେ ପେଟରେ ମୁଣିଟିଏ ଥିବା ଏକମାତ୍ର ପ୍ରାଣୀ ହେଉଛି କଙ୍ଗାରୁ ?

ନା !

* ଏ ତତ୍ତ୍ୱ ଆନ୍ଦାଜ ମାତ୍ର । ଏହାର କୌଣସି ପ୍ରମାଣ ନାହିଁ ।
* ନା, ନରୱେରୁ ଯାଇ ଲିଫ୍ ଏରିକ୍ ସନ୍ ୧୦୦୦ ଖ୍ରୀଷ୍ଟାବ୍ଦରେ ଆମେରିକାରେ ପହଞ୍ଚିଥିଲେ ।
* ନା, କଙ୍ଗାରୁ ଭଳି ପେଟରେ ମୁଣିଥିବା ପ୍ରାଣୀ ଆହୁରି ଅଛନ୍ତି, ଯଥା କୋଆଲା ଭାଲୁ, ଅପୋସାମ୍ ଏବଂ ଓ୍ୱମ୍ବାଟ୍ ।

# ଅନ୍ୟାନ୍ୟ ଉତ୍ତର

## ସେ କିଏ ?

କାଳିଦାସ । କିମ୍ବଦନ୍ତୀ ଅନୁସାରେ ସେ ଅତ୍ୟନ୍ତ ସରଳ ମଣିଷ ଥିଲେ ! ଜଣେ ରାଜକୁମାରୀ ସବୁଠାରୁ ବିଜ୍ଞ ଯୁବକକୁ ବିଭା ହେବେ ବୋଲି ଜିଦ୍ କରି ଜଣକ ପରେ ଜଣେ ପ୍ରାର୍ଥୀଙ୍କୁ ନାପସନ୍ଦ କରନ୍ତେ କେତେଜଣେ ହତାଶ ପଣ୍ଡିତ ପ୍ରତିଶୋଧ ନେବା ନିମନ୍ତେ ବାହାରିଲେ । ସରଳ କାଳିଦାସଙ୍କୁ (ତାଙ୍କ ମୂଳନାମ ଜଣାନାହିଁ) ନିପଟ ଓଲୁ ବୋଲି ଭାବି ସେମାନେ ତାଙ୍କୁ ନେଇ ରାଜକୁମାରୀଙ୍କୁ ପ୍ରତାରିତ କରି ବିଭା କରାଇଦେଲେ । ଶୀଘ୍ର ରାଜକୁମାରୀ ସେକଥା ବୁଝିପାରି ତାଙ୍କୁ ଅପମାନ ଦେଲେ । ଗଳ୍ପର ବାକି ଅଂଶ ତ ଜାଣିଛ !

## ଇତିହାସ

୧. ବାରାଣସୀ (କ) ବରୁଣା ଓ ଅସୀ (ଖ) ଗଙ୍ଗା (ଗ) ବିଶ୍ୱନାଥ ନାମରେ ବିଦିତ ଶିବଙ୍କ ମନ୍ଦିର ଯୋଗୁଁ ।

୨. ବାବର । ସେ ତାଙ୍କ ମଙ୍ଗୋଲ ମାତୃବଂଶ ଅନୁସାରେ ମୋଗଲ୍ ବୋଲି ପରିଚିତ (କ) ୧୫୨୬ ରେ (ଖ) ମୋଗଲ ବଂଶ (ଗ) ଚେଙ୍ଗିଜ୍ ଖାଁ ।

୩. ଆକବରନାମା (କ) ଆବୁଲ ଫଜଲ୍, (ଖ) ଆଇନ୍-ଇ-ଆକବରୀ । ଏ ଦ୍ୱିତୀୟ ବହିଟି ଆକବରଙ୍କ ଶାସନ କାଳର ପରିସଂଖ୍ୟାନ ଓ ତଥ୍ୟକୁ ନେଇ ଲେଖା ।

୪. ଚୋଳ, ପାଣ୍ଡ୍ୟ ଓ ଚେର ।

## ବିଜ୍ଞାନ

୧. ଫରାସୀ ବୈଜ୍ଞାନିକ ଜର୍ଜ କ୍ଲଡ୍ । ୧୯୧୦ ମସିହାର ଡିସେମ୍ବର ୩ ତା : ରେ ପ୍ୟାରିସ୍ ମୋଟର ପ୍ରଦର୍ଶନୀରେ ତାଙ୍କ ଉଦ୍ଭାବିତ ଆଲୋକ ପ୍ରଥମେ ଜନସାଧାରଣ ଦେଖିଲେ ।

୧. ୬,୬୫୦ ନିୟୁତ କିଲୋୱାଟ ବିଦ୍ୟୁତ ଶକ୍ତି ।

୩. ୧୫ ରୁ ୧୦ ବିଲିଅନ୍ ବର୍ଷ ।

୪. ମିଡ୍ଲ୍‌ବର୍ଗର ଜଣେ ଚଷମା ଦୋକାନୀ ହାନ୍ସ୍ ଲିପାର୍‌ସେ ଏହାର ଉଦ୍ଭାବକ ଭାବେ ପରିଚିତ । କିନ୍ତୁ ଅସଲ ଉଦ୍ଭାବକ ଯୁଡ଼ାଏ ଲେନ୍ସ୍ ନେଇ ଖେଳୁଥିବା ତାଙ୍କ ଦୋକାନର ଚାକର ପିଲାଟିଏ ।

୫. ନା, ଶୀତ କାଳରେହିଁ ସୂର୍ଯ୍ୟ ପୃଥିବୀର ନିକଟତର ହୋଇଥାଏ । ବ୍ୟବଧାନ ତିନି ନିୟୁତ ମାଇଲ୍ କମିଯାଏ ।

୬. କାରଣ ଯାହା ହେଉନା କାହିଁକି, ଶୁକ୍ରଗ୍ରହ ପୃଥିବୀର ନିକଟତର ହେଲା ବେଳେ ଅଧିକ ସଂଖ୍ୟାରେ ଉଡ଼ନ୍ତା ଥାଳିଆର ଖବର ମିଳେ ।

୭. ଆମେରିକା ଯୁକ୍ତରାଷ୍ଟ୍ର । ପୃଥିବୀର ସମୁଦାୟ ସମ୍ବାଦ ପତ୍ରର ଅଧାଅଧି ଆମେରିକା ଓ କାନାଡ଼ାରୁ ପ୍ରକାଶିତ ହୁଅନ୍ତି ।

୮. ୨୨ ଫୁଟ ପର୍ଯ୍ୟନ୍ତ ।

୯. ଜିରାଫ୍

୧୦. ସ୍କଙ୍କ୍‌ର ଗନ୍ଧ

## ସାହିତ୍ୟ

୧. ଶ୍ରୀମଦ୍ ଭଗବତ୍ ଗୀତା । ଏହା ଶ୍ରୀକୃଷ୍ଣ ଅର୍ଜୁନଙ୍କ ଭିତରେ ପ୍ରଶ୍ନୋତ୍ତର । (କ) ଅଠର (ଖ) ମହାଭାରତ (ଭୀଷ୍ମ ପର୍ବ) (ଗ) ବ୍ୟାସ ।

୨. କାଳିଦାସ (କ) ଦେବୀ କାଳୀଙ୍କ ବରରେ ସେ ପଣ୍ଡିତ ପାଲଟିଗଲେ ବୋଲି । (ଖ) ମାଳବିକାଗ୍ନିମିତ୍ର, ବିକ୍ରମୋର୍ବଶୀୟମ୍, ଅଭିଜ୍ଞାନ ଶକୁନ୍ତଳମ୍ । (ଗ) ରଘୁବଂଶମ୍, କୁମାର ସମ୍ଭବମ୍ ମେଘଦୂତମ୍ ।

୩. ମଧୁରାଇ (କ) କନ୍ନଗୀ (ଖ) ସିଲପ୍ପଦିକାରମ୍ ରାଜକୁମାର ଇଲଙ୍ଗୋ ଆଡିଗଲ୍‌ଙ୍କ ଦ୍ୱାରା ପ୍ରାୟ ଦୁଇ ହଜାର ବର୍ଷ ତଳେ ଲିଖିତ ।



ପ୍ରାଚୀନ ସାହିତ୍ୟର କାହାଣୀ

# ସୁବର୍ଣ୍ଣ ନୁପୁର

ଦୁଇହଜାର ବର୍ଷ ତଳେ ପୁଣ୍ୟତୋୟା କାବେରୀ ନଦୀର ମୁହାଣରେ ଥିଲା ଏକ ବିରାଟ ନଗରୀ । ନାମ ପୁମ୍ପୁହର । ସେ ନଗରୀ ଥିଲା ଚୋଳ ରାଜାଙ୍କ ରାଜଧାନୀ, ମନ୍ଦିର, ସୌଧମାଳ ଓ ବନ ଉପବନରେ ସୁଶୋଭିତ ।

ଚୋଳ ରାଜାମାନେ ନିଜ ନିଜର ନ୍ୟାୟ ପରାୟଣତା ଯୋଗୁଁ ବିଖ୍ୟାତ ଥିଲେ । ଲୋକେ ସ୍ୱାଧୀନ ଭାବରେ, ନିର୍ଭୟରେ ଜୀବିକା ନିର୍ବାହ କରୁଥିଲେ । ଗ୍ରୀସ୍ ଓ ରୋମ ଭଳି ଦୂର ଦେଶ ମାନଙ୍କରୁ ବ୍ୟବସାୟୀ ତଥା ବିଦ୍ୟାର୍ଥୀମାନେ ପୁମ୍ପୁହର ଆସୁଥିଲେ ।





ସେ ନଗରୀ-ସଂଲଗ୍ନ ସମୁଦ୍ର ବନ୍ଦରରେ ସବୁବେଳେ ଦେଶ ବିଦେଶର ଜାହାଜମାନ ଲଙ୍ଗର ପକାଇ ରହିଥାନ୍ତି । ପୁମ୍ପୁହରର ବଣିକମାନଙ୍କ ସହ ବେପାର କରିବାକୁ ବିଦେଶର ବଣିକମାନଙ୍କର ବିଶେଷ ଆଗ୍ରହର ହେତୁ ହେଲା, ପୁମ୍ପୁହରର ବଣିକ-ମାନେ ସାଧୁ ଓ ସଜ୍ଜନ ।



ପୁମ୍ପୁହରର ବଜାରରେ ନାନା ଅଭାବ-
ନୀୟ ସୁନ୍ଦର ଜିନିଷମାନ ଦେଖିବାକୁ
ମିଳୁଥାଏ । ମଣି ମୁକ୍ତାର ବିପଣୀ ଖୋଲି
ବସିଥା'ନ୍ତି ବଣିକ ସାଧବମାନେ । କିଣା
ବିକା କଥା ଅଲଗା, ସେ ବଜାର
ଦେଖିବା ନିମନ୍ତେ ବହୁ ଦୂରରୁ ବହୁ
ନରନାରୀ ଆସୁଥାନ୍ତି ।

ସେହି ନଗରୀରେ ଥିଲେ ଜଣେ ବଣିକ
ବୋଇତ ମାଲିକ । ତାଙ୍କ ନାମ
ମାନାଇକାନ୍ । ତାଙ୍କର କନ୍ନଗୀ
ନାମରେ କନ୍ୟା ଥିଲେ । କନ୍ନଗୀ
ଦେଖିବାକୁ ଏତେ ସୁନ୍ଦରୀ ଥିଲେ ଯେ
ଲୋକେ ତାଙ୍କୁ ଦେବୀ ଲକ୍ଷ୍ମୀଙ୍କ ସଙ୍ଗେ
ତୁଳନା କରୁଥିଲେ । କନ୍ନଗୀ ଯେପରି
ସୁନ୍ଦରୀ, ସେହିପରି ଗୁଣବତୀ ।





ଅଦୂରରେ ପୁମ୍ପୁହରର ସବୁଠାରୁ
ସମ୍ମାନିତ ସାଧବ ମାସାତୁଭନ୍‌ଙ୍କ
ପ୍ରାସାଦ । ତାଙ୍କ ତରୁଣ ପୁଅଙ୍କ ନାମ
କୋଭଲନ୍ । ସେ ଥିଲେ ଯେପରି
ବୁଦ୍ଧିମାନ, ସେହିପରି ଉଦାର ।
ସେ ଅଳ୍ପ ବୟସରେହିଁ ତାଙ୍କ ଦାନ-
ପଣ ନିମନ୍ତେ ସମସ୍ତଙ୍କ ଶ୍ରଦ୍ଧାଭାଜନ
ହୋଇ ପାରିଥିଲେ ।

ଚୋଳର ନାବିକ ମାନାଇକାନ୍ ଓ
ସାଧବ ମାସାତୁଭନ ଘନିଷ୍ଠ ବନ୍ଧୁ
ଥିଲେ । ଅତଏବ କନଗୀ ସହ
କୋଭଲନଙ୍କ ବିବାହ ଦେବା କଥା
ସେମାନଙ୍କ ମନକୁ ଆସିବା ସ୍ୱାଭାବିକ ।
ଏ ପ୍ରସ୍ତାବରେ ସେମାନଙ୍କ ବନ୍ଧୁବାନ୍ଧବ
ସମସ୍ତେ ଖୁସୀ ହେଲେ ଓ ଏହାକୁ
ସମର୍ଥନ କଲେ ।





କୋଭଲନ୍ ଓ କନଗୀଙ୍କ ବିବାହ
ଉପଲକ୍ଷ୍ୟେ ଉଭୟ ବର ଓ କନ୍ୟା
ପକ୍ଷରୁ ଯେଉଁ ଶୋଭାଯାତ୍ରା ବାହାରି-
ଥିଲା, ସେଭଳି ବିବାହ ଶୋଭାଯାତ୍ରା
ପୁମ୍ପୁହରର ଲୋକେ କେବେ ଦେଖି
ନଥିଲେ । ସୁସଜ୍ଜିତ ବିବାହ ମଣ୍ଡପରେ
ଯାଇ ଉଭୟ ଶୋଭାଯାତ୍ରା ଯଥା
ସମୟରେ ପହଞ୍ଚିଲେ । ଗୀତ ବାଦ୍ୟରେ
ଚତୁର୍ଦ୍ଦିଗ ମୁଖରିତ ।

ପ୍ରଥା ଅନୁସାରେ କୋଭଲନ୍ ଓ
କନଗୀ ହୋମକୁଣ୍ଡ ପ୍ରଦକ୍ଷିଣ କଲେ ।
ପୁରୋହିତମାନେ ବେଦମନ୍ତ୍ର ପାଠ
କରୁଥାନ୍ତି । ନରନାରୀମାନେ ପୁଷ୍ପ
ଚନ୍ଦନ ଇତ୍ୟାଦି ଦ୍ୱାରା ବରକନ୍ୟାଙ୍କୁ
ଶୁଭେଚ୍ଛା ଜ୍ଞାପନ କରୁଥାନ୍ତି ।
ପୁମ୍ପୁହରର ଅଧିବାସୀଙ୍କ ପାଇଁ ସେ
ଉତ୍ସବ ଥିଲା ଅବିସ୍ମରଣୀୟ ।





କୋଭଲନ୍‌ଙ୍କ ମା ପୁଅ ଓ ବଧୂଙ୍କ ନିମନ୍ତେ ଗୋଟିଏ ନୂତନ କୋଠା ନିର୍ମାଣ କରି ରଖିଥାନ୍ତି । କନ୍ନଗୀ ଅତ୍ୟନ୍ତ ଅତିଥିପରାୟଣା ବୋଲି ସେ ଜାଣିଥାନ୍ତି । ସ୍ୱତନ୍ତ୍ର ଘରେ ସେ ସ୍ୱାଧୀନ ଭାବରେ ଚଳିବେ ଓ ନିଜ ରୁଚି ଅନୁସାରେ ଘର ସଜାଇବେ, ଏହାହିଁ ଥିଲା କୋଭଲନ୍‌ଙ୍କ ମା'ଙ୍କ ଇଚ୍ଛା ।



ନଗରୀର ଅନ୍ୟ ଏକ ପ୍ରାନ୍ତରେ ରହୁଥିଲେ ମାଧବୀ—ସତେ ଅବା ଅପ୍‌ସରାଟିଏ ସେ ସ୍ୱର୍ଗରୁ ଭୁଲ୍‌ରେ ଚାଲି ଆସିଛି । ସେ ହେଲେ ନର୍ତ୍ତକୀ । ବହୁଦିନ ଧରି ସେ ନୃତ୍ୟାଭ୍ୟାସ କରୁଥାନ୍ତି । ସଙ୍ଗେ ସଙ୍ଗେ ଆୟତ୍ତ କରିଥାନ୍ତି ଗୀତ ବୋଲିବାର କଳା ।



ଯେତେବେଳେ ସେ ନୃତ୍ୟ ଓ ସଙ୍ଗୀତ ବିଦ୍ୟାରେ ଉତ୍ତୀର୍ଣ୍ଣ ହୋଇଛନ୍ତି ବୋଲି ତାଙ୍କ ଗୁରୁ କହିଲେ, ସେତେବେଳେ ସେ ରାଜାଙ୍କ ଆଗରେ ତାଙ୍କ କଳା ପରିବେଷଣ କରିବା ନିମନ୍ତେ ପ୍ରସ୍ତୁତ ହେଲେ । ସେଦିନ ସନ୍ଧ୍ୟାରେ ପ୍ରେକ୍ଷାଳୟ ନଗରୀର ସମ୍ଭ୍ରାନ୍ତ ଲୋକଙ୍କ ଦ୍ୱାରା ଭର୍ତ୍ତି ହୋଇଯାଇଥାଏ । ରାଜା ଆସିଲେ । ହେଲା ମାଧବୀଙ୍କ ନୃତ୍ୟାରମ୍ଭ । (କ୍ରମଶଃ)



# କଥାର ଦୁଇ ଭଙ୍ଗୀ

ସୁଧାକର ରାଜଦରବାରରେ କାମ କରୁଥାଏ । ଛୁଟି ପାଇଲେ ଗାଁକୁ ଆସୁଥାଏ । ଗାଁକୁ ଆସିଲେ ସେ ସହରରେ ତା' ପଦମର୍ଯ୍ୟାଦା କଥା ଭୁଲି ଗାଁ ଲୋକଙ୍କ ସହ ଗାଁ ମାଟିର ଜଣେ ସନ୍ତାନ ହିସାବରେହିଁ ବ୍ୟବହାର କରୁଥାଏ ।

"କହୋ ଜେଜେ, ତମ ମୁହଁ ବିରସ ଲାଗୁଛି କାହିଁକି?" ସୁଧାକର ସେଥର ଗାଁକୁ ଆସି ବୁଢ଼ା ରତନ ଦାସଙ୍କୁ ପଚାରିଲା । ରତନ ଦାସ ତାକୁ ଧରି ନିଜ ଘର ହତାର ଗୋଟିଏ କୋଣକୁ ନେଇଗଲେ ଓ କହିଲେ, "ଆରେ ସୁଧାକର, ମୁଁ ତୋତେ ବାଟ ଚାହିଁଥିଲି । ମୋ ନାତି ରମେଶ କଥା ତ ଜାଣୁ । ସେ ପାଠଶାଠ ପଢ଼ିଥିଲେ ବି ଚାକିରି କରିବାକୁ ପସନ୍ଦ କଲା ନାହିଁ । ଘରେ ରହି ଜମିବାଡ଼ି ଦେଖାଶୁଣା କରିବାରେ ମନ ଦେଲା । ଏହା ତ ଅତି ଉତ୍ତମ କଥା । ଆମେ ସମସ୍ତେ ଭାବିଲୁଁ ସେ ଗୋଟିଏ ଆଦର୍ଶ । କିନ୍ତୁ ସମସ୍ୟା କ'ଣ କି, ତା' ସହ ଗାଁ ଲୋକଙ୍କର ପଡ଼ୁନାହିଁ । ଆମ ଘର ସହ ସବୁ ଲୋକଙ୍କର ଭଲ ସମ୍ପର୍କ ଥିଲା । କିନ୍ତୁ ଆଜିକାଲି ପ୍ରତିବେଶୀମାନେ ଆମ ଉପରେ ମୋଟେ ସନ୍ତୁଷ୍ଟ ନୁହନ୍ତି ବୋଲି ମୁଁ ବୁଝି ପାରୁଛି ।"

"କିନ୍ତୁ ଏହାର କାରଣ କ'ଣ?" ସୁଧାକର ଟିକିଏ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"ତୋତେ କିଛି ଲୁଚାଇବି ନାହିଁ । ମୋ ବୟସ ହେଲାଣି । ପାଠଶାଠ ନ ପଢ଼ିଥିଲେ ବି ମଣିଷଙ୍କ ମନ ସମ୍ପର୍କରେ ମୋର ଅଭିଜ୍ଞତା ଅଛି । ରମେଶ ବଡ଼ ଗର୍ବୀ । ପାଠ ପଢ଼ିଛି, କୃଷିବିଜ୍ଞାନରେ ତା'ର ବହୁତ ଦକ୍ଷତା, ସେ ଅନ୍ୟ ଗ୍ରାମବାସୀମାନଙ୍କୁ ହେୟ ଜ୍ଞାନ କରେ । ତୁ ଯଦି ଥରେ ତା' ସହ କଥାବାର୍ତ୍ତା ହୋଇ ତାକୁ ଚେତାଇ ଦିଅନ୍ତୁ, ତେବେ ତା' ସ୍ୱଭାବ ସୁଧାରି ଯା'ନ୍ତା ।" ରତନ ଦାସ କହିଲେ ।

"ହେଉ ଜେଜେ, ସୁଯୋଗ ପାଇଲେ ମୁଁ ତାହା କରିବ।" ସୁଧାକର କହିଲା।

ଦୁଇଦିନ ଭିତରେ ଗାଁ ଲୋକଙ୍କ ସହ କଥାବାର୍ତ୍ତା କରି ସୁଧାକର ବୁଝିଗଲା, ରମେଶ ସ୍ୱାର୍ଥପର। ସେ ନିଜ ଅସୁବିଧା ବେଳେ ଅନ୍ୟମାନଙ୍କ ସାହାଯ୍ୟ କାମନା କରିବ, କିନ୍ତୁ ଅନ୍ୟମାନେ ଅସୁବିଧାରେ ପଡିଥିଲେ ସେମାନଙ୍କୁ ସାହାଯ୍ୟ କରିବାକୁ ଆଗଭର ହେବ ନାହିଁ। ନିଜେ ଭଲ ଫଳମୂଳ ଉପୁଜାଇଲେ ଅନ୍ୟମାନଙ୍କଠାରୁ ପ୍ରଶଂସା ଆଶା କରିବ, କିନ୍ତୁ ଅନ୍ୟମାନେ କୌଣସି କାମରେ ସାଫଲ୍ୟ ଦେଖାଇଲେ ସେମାନଙ୍କୁ ଯେ ପ୍ରଶଂସା କରି ଦୁଇପଦ କହିବ, ତାହା ନୁହେଁ। ବରଂ ସେମାନଙ୍କୁ ଥଟ୍ଟା କରିବା ଆଉ ସମସ୍ତଙ୍କର ଭୁଲ ତ୍ରୁଟି ଉପରେ କଡ଼ା ସମାଲୋଚନା କରିବା ତା'ର ଅଭ୍ୟାସ।

ଦୁଇଦିନ ପରେ ଦିନେ ରମେଶକୁ ଏକାକୀ ଦେଖି ସୁଧାକର ତା' ସହ ଗପସପ କଲା ଓ କଥା ପ୍ରସଙ୍ଗରେ କହିଲା, "ଆରେ ଭାଇ, ଏ ଗାଁରେ ତୁ ଏକମାତ୍ର ଲୋକ ଯିଏ କି କୃଷିବିଜ୍ଞାନ ପଢିଛୁ। ଗାଁ ଲୋକେ ତୋତେ ନେଇ ଗର୍ବ କରିବା କଥା। ତୁ ଯଦି ସେମାନଙ୍କ ସହ ମିଶନ୍ତୁ, ସେମାନଙ୍କୁ ସାହାଯ୍ୟ କରନ୍ତୁ, ତେବେ ସେମାନେ ତୋତେ ମୁଣ୍ଡରେ ବସାନ୍ତେ।"

"କାହାରି ମୁଣ୍ଡରେ ବସିବା ମୋର ଦରକାର କ'ଣ? କେଉଁ ଗରଜରେ ମୁଁ କାହା ସହ ମିଶିବାକୁ ଯିବି?" ରମେଶ କହିଲା।



"ଦେଖ ରମେଶ, ଗାଁରେ ସମସ୍ତେ ମିଳିମିଶି ଚଳିବା ହେଲା ଧର୍ମ। ଏହାହିଁ ପଲ୍ଲୀ ଜୀବନର ମଧୁରତା ଓ ବିଶେଷତ୍ୱ। ତୁ ସହରରେ ଗୁକଷ ରହିଲେ ଏକା କୋଠାର ଅନ୍ୟ ମହଲାରେ ରହୁଥିବା ଲୋକ ସହ ବି ଆଳାପ ନଥିଲେ ଚଳିବ। କିନ୍ତୁ ଏଠାରେ ସେପରି ହେବ ନାହିଁ। ତୁ ଅନ୍ୟମାନଙ୍କ ପ୍ରତି ସହାନୁଭୂତିଶୀଳ ହେବା ଆବଶ୍ୟକ। ସେଥିରେ ତୋତେହିଁ ଆନନ୍ଦ ମିଳିବ। ତୁ ସ୍ୱାର୍ଥପର ହେଲେ, ପରର ଛିଦ୍ର ଖୋଜିଲେ ଲୋକେ ତୋ ପ୍ରତି ସେହିପରି ଆଚରଣ କରିବେ।" ସୁଧାକର କହିଲା।

"ଷ୍ଟପ୍! ମୁଁ ସ୍ୱାର୍ଥପର ଆଉ ତୁ ଭାରି ଉଦାର! ଆଉ ବେଶି କହିଲେ ତୋ ଛାମୁ ଦାନ୍ତ ଦୁଇଟା ଭାଙ୍ଗି ଦେବି।" ରମେଶ ଶୁଣାଇ ଦେଲା।

ସୁଧାକର ହସିଲା ଓ କହିଲା, "ହେଲା ଭାଇ, ହେଲା। ତୁ ଆଉ କଷ୍ଟ କରି ମୋ ଦାନ୍ତ ଭାଙ୍ଗିବା ଦରକାର ନାହିଁ।"

ପରଦିନ ରମେଶ ସହ ସୁଧାକରର ଭେଟ ହୋଇଗଲା। ରମେଶ କହିଲା, "ସୁଧା! ଆଚାର୍ଯ୍ୟ ବ୍ରଜଦେବ ଆଜି ମନ୍ଦିର ଆଗରେ ଭାଷଣ ଦେବେ। ଯିବୁଟି?"

ସୁଧାକର କହିଲା, "ତୁ ଯଦି ଯିବୁ, ମୁଁ ବି ଯିବି।"

ସନ୍ଧ୍ୟାବେଳେ ରମେଶ ଆସି ସୁଧାକରକୁ ତା' ଘରୁ ଡାକି ନେଇଗଲା। ଉଭୟେ ଯାଇ ସଭାର ଆଗ ଧାଡିରେ ବସିଲେ ଓ ବକ୍ତୃତା ଶୁଣିଲେ।

ଆଚାର୍ଯ୍ୟ କହିଲେ, "ମଣିଷର ଅଶାନ୍ତିର ମୂଳ କାରଣ ସେ ନିଜେ। ଯାହା ଭିତରେ ଗ୍ଲାନି



ଓ ଦୁର୍ବଳତା ଭର୍ତ୍ତି, ସିଏ ସବୁବେଳେ ଅନ୍ୟର ଭୁଲ ଭ୍ରାନ୍ତ ବା ଦୋଷ ଦୁର୍ବଳତା ଉପରେ ମନ୍ତବ୍ୟ ଦିଏ । ଯାହା ମନରେ ଶାନ୍ତ ସଦ୍‌ଭାବ ଭର୍ତ୍ତି ହୋଇଥିବ, ଅନ୍ୟର ତ୍ରୁଟି ବିଷୟ କହିବାକୁ ତା' ମନ ହେବ ନାହିଁ ।"

ସୁଧାକର କଣେଇ କଣେଇ ଲକ୍ଷ୍ୟ କଲା, ରମେଶ ମନ ଦେଇ ଆଚାର୍ଯ୍ୟଙ୍କ କଥା ଶୁଣୁଛି ।

ଆଚାର୍ଯ୍ୟ ପୁଣି କହିଲେ, "ଶାନ୍ତି, ସନ୍ତୋଷ ଭଗବାନଙ୍କଠୁଁ ଆସେ । କୌଣସି ମଣିଷ ବା ପରିସ୍ଥିତି ଏସବୁ ଦେଇପାରେ ନାହିଁ । ଏସବୁ ପାଇବା ମାର୍ଗ ହେଲା ଅନ୍ୟପ୍ରତି ସହାନୁଭୂତିଶୀଳ ହେବା, ନିଜେ ସ୍ୱାର୍ଥପର ନ ହେବା ।"

ସୁଧାକର ପୁଣି ରମେଶ ଆଡ଼େ ଅନାଇଲା । ରମେଶ ଆଚାର୍ଯ୍ୟଙ୍କ ଦାନ୍ତ ଭାଙ୍ଗିବାକୁ ବାହାରି-ପଡିବ ନାହିଁ ତ?

ସଭା ଶେଷ ହେଲା । ବାଟରେ ରମେଶ କହିଲା, "କିରେ ସୁଧା, ଆଚାର୍ଯ୍ୟଙ୍କ ଭାଷଣ କିପରି ଲାଗିଲା? ମୋତେ ତ ଭାରି ଭଲ ଲାଗିଲା ।"

"ଆଚାର୍ଯ୍ୟଙ୍କ ଭାଷଣ ମୁଁ ଆଗରୁ ବି ଶୁଣିଛି । ସେ ବାସ୍ତବିକ ବହୁତ ଭଲ କହନ୍ତି ।"

ସୁଧାକର ଆମୋଦିତ ହେଲା । ପରଦିନ ସେ ଆଚାର୍ଯ୍ୟଙ୍କୁ ଭେଟିଲା । ଆଚାର୍ଯ୍ୟ ତାକୁ ରାଜ-ଦରବାରରେ ଆଗରୁ ଚିହ୍ନିଥିଲେ । ସୁଧାକର ଏକାନ୍ତରେ ତାଙ୍କୁ ରମେଶ କଥା କହିଲା ଓ ପ୍ରଶ୍ନ କଲା, "ଆଚାର୍ଯ୍ୟ! ଆପଣ ଯାହା କହିଥିଲେ, ମୁଁ ତାକୁ ସେଇଆ କହିଥିଲି । କିନ୍ତୁ ସେ ମୋ ଉପରେ ରାଗିଗଲା । ଆପଣଙ୍କର ପ୍ରଶଂସା କଲା । ଏହାର ରହସ୍ୟ କ'ଣ?"

ଆଚାର୍ଯ୍ୟ ହସି ହସି କହିଲେ, "ତମେ ତାକୁ ନିର୍ଦ୍ଦିଷ୍ଟ ଭାବରେ ସ୍ୱାର୍ଥପର ବୋଲି କହିଲ । ମୁଁ ଯାହା କହୁଥିଲି, ତାହା ସମଗ୍ର ଜନସାଧାରଣଙ୍କ ପ୍ରତି ସାଧାରଣ ଭାବରେ ପ୍ରଯୁଜ୍ୟ । ତେଣୁ ତାକୁ ସେ ନିଜ ଉପରକୁ ନେଲା ନାହିଁ । ତମ କଥା ନିଜ ଉପରକୁ ନେଲା । ସଙ୍ଗେ ସଙ୍ଗେ ନିଜ ଅହଂରେ ଲାଗିଲା ।"

ସୁଧାକର ବୁଝିଲା ।





# କୃଷ୍ଣାବତାର

ବିକଦ୍ରୁଠାରୁ ସବୁ ଖବର ଶୁଣି ଶ୍ରୀକୃଷ୍ଣ କହିଲେ,

ଏପରି ଅବସ୍ଥାରେ ମୁଁ ଏବଂ ଭାଇ ବଳରାମ ଏ ସ୍ଥାନ ଛାଡ଼ି ଚାଲିଯିବା ଭଲ । କାରଣ ଆମରି ପାଇଁ କେବଳ ଏଠାରେ ଯୁଦ୍ଧ ଚାଲୁ ରହିବ ଓ ହଜାର ହଜାର ନିରୀହ ପ୍ରାଣୀ ଅକାରଣରେ ଜୀବନ ଦେବେ । ପ୍ରଜାମାନଙ୍କର ଏପରି କ୍ଷତି ଆମେ ଚାହୁଁନାହିଁ । ତେଣୁ ଆମେ ଦୁର୍ଗ ବାହାରକୁ ଯାଇ ଦକ୍ଷିଣ ଦିଗକୁହିଁ ଚାଲିଯିବୁ । ସେଠାରେ କୌଣସି ଏକ ଦୁର୍ଗ ଅଧିକାର କରି ଜରାସନ୍ଧ ସହିତ ଲଢ଼ିବୁ । ଏଠାରେ ବିନା କାରଣରେ କାହିଁକି ପ୍ରଜାଙ୍କ ଜୀବନକୁ ବିପଦାପନ୍ନ କରିବୁ ।"

କୃଷ୍ଣଙ୍କର ଏକଥାକୁ ସମସ୍ତେ ସ୍ୱୀକାର କଲେ ।

ତା'ପରେ କୃଷ୍ଣ ଓ ବଳରାମ ମଥୁରାନଗରୀରୁ ବାହାରକୁ ଆସି ଜରାସନ୍ଧକୁ ସାକ୍ଷାତ କରି କହିଲେ, "ହେ ମଗଧରାଜ, ଆପଣ ଏଠାକୁ କି କାର୍ଯ୍ୟ ନିମନ୍ତେ ଆଗମନ କରିଛନ୍ତି? ପୁଣି ଆପଣଙ୍କ ସହିତ ଏତେଗୁଡ଼ିଏ ସୈନ୍ୟ । ଯଦି କିଛି ସତ୍କାର୍ଯ୍ୟ କରିବାକୁ ଚାହାନ୍ତି ତ ଆମେ ଆପଣଙ୍କର ସହାୟତା କରିବୁ । ଯଦି ଯୁଦ୍ଧ କରିବାକୁ ଇଚ୍ଛା ତେବେ କରନ୍ତୁ; କିନ୍ତୁ କାହିଁକି ?"

ଶ୍ରୀକୃଷ୍ଣଙ୍କ କଥା ଶୁଣି ଅସ୍ତ୍ରଶସ୍ତ୍ର ପରିହିତ ଜରାସନ୍ଧ କହିଲା, "ବହୁତ କଥା କହି ଜାଣୁ କୃଷ୍ଣ । ଶୁଣିଛି ତୁ ଓ ତୋ ଭାଇ ଖୁବ୍ ବଳବାନ୍ । ମୋ ଜ୍ୱାଇଁ କଂସକୁ ମାରିପକାଇଛୁ । ଏହାର ପ୍ରତିଶୋଧ ମୁଁ ନେବାକୁ ଆସିଛି । ଯା ଅସ୍ତ୍ରଶସ୍ତ୍ର ନେଇ ଆସ । ଯୁଦ୍ଧ କରିବା । ଦେଖିବା କିଏ ବଳଶାଳୀ । ଆସିଲି ସତ୍କାର୍ଯ୍ୟରେ

## ୧୩. ଜରାସନ୍ଧର ପରାଜୟ



ସହାୟତା କରିବାକୁ । ଘରି ଟିକ୍‌କଣ କଥା କହିଜାଣ୍ଡୁ ।"

ଶ୍ରୀକୃଷ୍ଣ ଟିକିଏ ହସିଲେ ଓ କହିଲେ, "ଠିକ୍ ଅଛି ଆମେ ଏବେ ଦକ୍ଷିଣ ଦିଗକୁ ଯାଉଛୁ । ତମେ ଯୁଦ୍ଧ କରୁଥା," ଏତିକି କହି ସେ ଓ ବଳରାମ ଦକ୍ଷିଣ ଅଞ୍ଚଳକୁ ଶୀଘ୍ର ଚାଲିଗଲେ । ଯାଉଁ ଯାଉଁ ସେ ବିନ୍ଧ୍ୟାଚଳରେ ଦେଖିଲେ ଭଗବାନ୍ ପର୍ଶୁରାମଙ୍କୁ । ସେଠାରେ ବାତାବରଣ ଖୁବ୍ ସୁନ୍ଦର ଥିଲା । ଯଜ୍ଞ ପାଇଁ ଗୋଟିଏ ଧେନୁ ଓ ତା'ର ବତ୍ସ ସେଠାରେ ବନ୍ଧା ହୋଇଥାଏ । ନାନା ଫୁଲଫଳ ଶୋଭିତ ବୃକ୍ଷରାଜି ଚତୁର୍ଦ୍ଦିଗରେ ପୂରି ରହିଥାଏ । ଏକ ବିରାଟ ଯଜ୍ଞକୁଣ୍ଡରେ ଅଗ୍ନି ଜଳୁଥାଏ । ଭଗବାନ୍ ପର୍ଶୁରାମ ଧ୍ୟାନସ୍ଥ ହୋଇ ବସିଥା'ନ୍ତି । ସମ୍ମୁଖରେ ଶିବଲିଙ୍ଗ । ତାଙ୍କର ତପସ୍ୟାଶକ୍ତି ଯୋଗୁ ମନେ ହେଉଥାଏ ଯେପରି ତାଙ୍କ ଦେହରୁ ଆଲୋକ ବାହାରୁଛି । କିଛି ସମୟ ଦୁଇଭାଇ ସେଠାରେ ବସିବା ପରେ ପର୍ଶୁରାମଙ୍କର ଧ୍ୟାନ ଭାଙ୍ଗିଲା । ଏମାନେ ଯାଇ ତାଙ୍କୁ ପ୍ରଣାମ କଲେ ଓ କହିଲେ, "ମହାତ୍ମନ୍, ଆମେ ଦୁହେଁ ଯାଦବଶ୍ରେଷ୍ଠ ବସୁଦେବଙ୍କ ପୁତ୍ର । ଯମୁନା ତଟସ୍ଥିତ ମଥୁରାନଗରୀର ବାସିନ୍ଦା । ପିଲାଦିନରୁ କଂସ ଭୟରେ ଆମକୁ ଆମ ପିତା ଗୋପରେ ନନ୍ଦରାଜାଙ୍କ ପାଖରେ ଛାଡି ଆସିଥିଲେ । ସେ ଆମର ଲାଳନ ପାଳନ ଦାୟିତ୍ୱ ନେଇଥିଲେ । ପରେ ଆମେ ବଡ଼ ହୋଇ ଆସି କଂସକୁ ମାରିବାରୁ କଂସର ଶ୍ୱଶୁର ଜରାସନ୍ଧ ମଥୁରାନଗରୀ ଉପରେ ଆକ୍ରମଣ କଲା । ପ୍ରଜାଙ୍କର ଅଯଥା ପ୍ରାଣହାନି ଭୟରେ ଆମେ ଏଠାକୁ ଆସିଛୁ । ଜରାସନ୍ଧ ମଧ୍ୟ ସୈନ୍ୟସାମନ୍ତ ଧରି ଆମର ପିଛା କରୁଥିବ । ଏବେ କ'ଣ କରାଯାଏ ?"

ପର୍ଶୁରାମ କହିଲେ, "ତୁମେ ଦୁହେଁ ଦକ୍ଷିଣ ଦିଗକୁ ଆସିବାର ସେ ଜାଣିଛି । ତେଣୁ ତୁମକୁ ଖୋଜି ଖୋଜି ନିଶ୍ଚୟ ସେ ଏଠାରେ ପହଞ୍ଚିବ । ତୁମକୁ ମୁଁ ପାହାଡ଼ ଉପରେ ସ୍ଥିତ ଏକ ଦୁର୍ଗକୁ ନେଇଯିବି ତମେ ଦୁହେଁ ସେହିଠାରେ ଥାଇ ତା' ସହିତ ଯୁଦ୍ଧ କରିବ । ମୁଁ ତୁମକୁ ଆଶିର୍ବାଦ କରୁଛି ତୁମେ ଦୁହେଁହିଁ ବିଜୟୀ ହେବ । ମନେରଖ ପାପୀମାନେ କେବେ ଜିତି ପାରିବେ ନାହିଁ ।"

ତା'ପରେ ଭଣଜଣଯାକ ଯାଇ ଗୋମନ୍ତ ପର୍ବତରେ ପହଞ୍ଚିଲେ । ଏକ ଗୋପନପଥ ଦେଇ ସେମାନେ ଉପରକୁ ଗଲେ । ପର୍ବତ ଉପରକୁ ଯାଇ ଦେଖିଲେ ଅତି ସୁନ୍ଦର ଦୃଶ୍ୟ । ଲାଗୁଥାଏ ଯେପରି ସୂର୍ଯ୍ୟଚନ୍ଦ୍ରଙ୍କର ଉଦୟାସ୍ତ ବହୁତ ନିକଟରେ ହେଉଛି । ତା'ଛଡ଼ା ସମସ୍ତ ଦ୍ୱୀପମାଳା ସହିତ ସମୁଦ୍ର ମଧ୍ୟ ଦେଖାଯାଉଥାଏ । ସେଠାରେ ସୁନ୍ଦର ସୁନ୍ଦର ଗୁମ୍ଫା ଓ ଦୁର୍ଗ ଥିଲା । ପର୍ଶୁରାମ କହିଲେ, "ଏବେ ତୁମେ ଦୁହେଁ ସାବଧାନ ହୋଇ ଥାଅ । ଶତ୍ରୁସୈନ୍ୟ ଆସିବା ମାତ୍ରକେ ଶବ୍ଦ ଶୁଣିପାରିବ । ଏଠାରୁ ଥାଇ ଯୁଦ୍ଧ କଲେ ସେମାନେ ହାରି ପଳାଇଯିବେ । ମୁଁ ମୋର ପାରୁପର୍ଯ୍ୟନ୍ତ ତୁମର ସହାୟତା କଲି । ଏବେ ମୁଁ ଯାଉଛି । ଜୟ ତୁମରହିଁ ହେବ ।" ଏହା କହି ପର୍ଶୁରାମ ଚାଲିଗଲେ ।

ଦୁଇ ଭାଇ ପର୍ବତର ପ୍ରାକୃତିକ ସୌନ୍ଦର୍ଯ୍ୟ ଅବଲୋକନ କରି ଆନନ୍ଦରେ ଥା'ନ୍ତି । କିଛିଦିନ ପରେ ଜରାସନ୍ଧ ତା'ର ସମସ୍ତ ସୈନ୍ୟ ଓ ବନ୍ଧୁ ରାଜାମାନଙ୍କୁ ଧରି ଆସି ସେଠାରେ ପହଞ୍ଚିଲା । ସେମାନଙ୍କ ମଧ୍ୟରେ ଥା'ନ୍ତି, ଶିଶୁପାଳ, ରୁକ୍ମି, ଚେକିତାନ, ବାହ୍ଲିକ, ଜୟଦ୍ରଥ ଆଦି ବଡ଼ ବଡ଼ ବୀର ରାଜା ।

ଜରାସନ୍ଧ ସବୁ ରାଜାମାନଙ୍କର ଏକ ସଭା କରି କହିଲା, "ଖବର ମିଳିଛି ଯେ ଯାଦବ କୁମାର ଦୁହେଁ ଏହି ପର୍ବତରେହିଁ ରହିଛନ୍ତି । ଏହାର ଉପରକୁ ଯିବା ଦେବତାମାନଙ୍କ ପାଇଁ ମଧ୍ୟ



ଦୁଃସାଧ୍ୟ ପୁଣି ରଥଚଢ଼ି ଯିବା ତ ସମ୍ଭବ ନୁହେଁ । ଆମେମାନେ ରାସ୍ତା ପରିଷ୍କାର କରି ଉପରକୁ ଯିବାକୁ ଚେଷ୍ଟା କରିବା । ନିହାତି କିଛି କରି ନ ପାରିଲେ ପର୍ବତକୁ ଭାଙ୍ଗି ଚୂରି ଧୂଳିସାତ୍ କରି ସେମାନଙ୍କୁ ମାରିବା ପରେ ଯାଇ ଘରକୁ ଫେରିବା ।"

ଶିଶୁପାଳ କହିଲା, "ଆମର ରଥୀମାନେ ଏହା ଉପରକୁ ଯାଇ ପାରିବେ ନାହିଁ । ଆମେ ଚାରିପଟରୁ ଘେରି ରଖିଲେ ସେମାନେ ବାହାରୁ କିଛି ନ ପାଇ ସେଠାରେ ନିଶ୍ଚୟ ମରିବେ । ତା'ଛଡ଼ା ଆମେ ପର୍ବତ ଚାରିପଟରେ ନିଆଁ ଧରାଇ ଦେବା, ତେବେ ସେମାନେ ବହୁତ କଷ୍ଟ ପାଇବେ ।"



ଶିଶୁପାଳର କଥା ଜରାସନ୍ଧ ମନକୁ ଖୁବ୍ ପାଇଲା । ସେ ସୈନିକମାନଙ୍କୁ ସେହିପରି ଆଦେଶ ଦେଲା । ସୈନ୍ୟମାନଙ୍କୁ ସେ ଡ଼ାକି କହିଲା, "ହେ ବୀର ସୈନିକଗଣ, ଏବେ ତମେମାନେ ନିକଟସ୍ଥ ଅରଣ୍ୟ ମଧ୍ୟରୁ ଶୁଷ୍କକାଷ୍ଠ ଆଦି ନେଇଆସି ପର୍ବତ ଚାରିପାଖରେ ରଖ ଏବଂ ସେଥିରେ ଅଗ୍ନି ସଂଯୋଗ କର । ସେଇଟା ତୁମମାନଙ୍କର ପ୍ରଧାନ କାର୍ଯ୍ୟ । କିନ୍ତୁ ତମେମାନେ ତା'ପରେ ଯୁଦ୍ଧ ପାଇଁ ଅସ୍ତ୍ରଶସ୍ତ୍ର ଧରି ପ୍ରସ୍ତୁତ ହୋଇ ରହିଥିବ । ସେ ଗୋପାଳ ଟୋକା ଦୁହେଁ ଅଗ୍ନିତାପରେ ବାହାରି ଆସିବା ମାତ୍ରେ ତାଙ୍କୁ ଚାରିପଟରୁ ଆକ୍ରମଣ କରି ତାଙ୍କୁ ମାରିଦେବ । ଏହାହିଁ ମୋର ଆଦେଶ ।

ଜରାସନ୍ଧର ଆଦେଶ ଶୁଣି ସୈନ୍ୟଦଳ ତତ୍‌କ୍ଷଣାତ୍ କାମରେ ଲାଗିଗଲେ । ରାଜାମାନେ ଅସ୍ତ୍ରଶସ୍ତ୍ର ଧରି ପ୍ରସ୍ତୁତ ହୋଇଥା'ନ୍ତି । ସୈନ୍ୟମାନେ ସବୁ ଶୁଷ୍କକାଷ୍ଠ ଓ ଅନ୍ୟାନ୍ୟ ଉପକରଣ ସବୁ ପର୍ବତର ଚାରିପାଖରେ ଠୁଳ କରି ନିଆଁ ଧରାଇ ଦେଲେ । ଅଗ୍ନିର ଲେଲିହାନ ଶିଖା ପବନର ସହାୟତା ପାଇ ଖୁବ୍ ଉପରକୁ ଉଠିଲା ଓ ପର୍ବତର ଚାରିପାଖ ଧୂଆଁରେ ଛାଇଗଲା ।

ଉପରେ ଥାଇ ଶ୍ରୀକୃଷ୍ଣ ଓ ବଳରାମ ସବୁ ଦେଖୁଥା'ନ୍ତି । କିଛି ସମୟ ସେମାନେ ନିଆଁ ଧୂଆଁ ଭିତରେ ରହିଲେ । ତା'ପରେ ବଳରାମ ରାଗିଯାଇ ଶ୍ରୀକୃଷ୍ଣଙ୍କୁ କହିଲେ, "ଯଦି ଆମକୁ ଯୁଦ୍ଧ କରିବାକୁହିଁ ହେବ ତେବେ ଆଉ ଅପେକ୍ଷା କରିବା କାହିଁକି ? ଆଉ କାପୁରୁଷ ପରି ଲୁଚି ରହିବା ବା କାହିଁକି ଚାଲ ପ୍ରସ୍ତୁତ ହୁଅ । ଦେଖ ସେମାନଙ୍କର ବୁଦ୍ଧି··· । ଆମକୁ ମାରିବା ପାଇଁ ପର୍ବତକୁ ଏମାନେ କେତେ କଷ୍ଟ ଦେଉଛନ୍ତି । ଏସବୁ ସହ୍ୟ କରିବାହିଁ ଅପରାଧ । ଏବେ ମୁଁ ସେହି ସୈନ୍ୟଦଳ ମଧ୍ୟକୁ ଡେଇଁ ପଡିବି ଓ ସେମାନଙ୍କୁ ଏପରି ଶିକ୍ଷା ଦେବି ଯେ ସେହି ରାଜାମାନେ ଆଉ କେବେ ଏପରି ଭୁଲ କରିବେ ନାହିଁ ।" ଏତିକି କହି ବଳରାମ ପର୍ବତ ଉପରୁ ସେନାମାନଙ୍କ ମଧ୍ୟକୁ ଡ଼େଇଁ ପଡିଲେ ଓ ମାରି ମାରି ସମସ୍ତିଙ୍କୁ ଛିନ୍ନଛତ୍ର କରି ପକାଇଲେ । କୃଷ୍ଣ ମଧ୍ୟ ଭାଇଙ୍କ ସହିତ ଡେଇଁ ପଡିଲେ ।

ଦୁହିଁଙ୍କର ଘୋର ରଣ ଯୋଗୁ ରାଜା ଓ ସୈନ୍ୟମାନେ ପଳାଇବାକୁ ଲାଗିଲେ ଓ ଅସଂଖ୍ୟ ସୈନ୍ୟ ପ୍ରାଣ ଦେଲେ । ସେହିଭଳି ଭୟଙ୍କର ଯୁଦ୍ଧ ବହୁତ ସମୟ ଧରି ଚାଲିଲା । କୃଷ୍ଣ ଓ ବଳରାମଙ୍କର ପ୍ରବଳ ପରାକ୍ରମ ଦେଖି ସୈନ୍ୟ ଓ ବୀରମାନେ କ୍ରମେ ଛତ୍ରଭଙ୍ଗ ଦେଲେ । ଧୀରେ ଧୀରେ ରଣକ୍ଷେତ୍ର ଖାଲି ହେବାକୁ ଲାଗିଲା । ଏହି ସୁଯୋଗରେ ଶ୍ରୀକୃଷ୍ଣ ତୀର ମାରି ପାତାଳଗଙ୍ଗାକୁ ଆବାହନ କଲେ । ଚାରିପଟରେ ଅଗ୍ନି ଜଳୁଥିବା ଯୋଗୁ ପର୍ବତକୁ ବହୁତ କଷ୍ଟ ହେଉଥିବା ଭାବି ଶ୍ରୀକୃଷ୍ଣ ଏପରି କଲେ, "ପ୍ରକୃତରେ ପର୍ବତ ଅଗ୍ନି ଯୋଗୁ ବହୁତ କଷ୍ଟ ପାଉଥିଲା । ପାତାଳ ଗଙ୍ଗା ଶ୍ରୀକୃଷ୍ଣଙ୍କ ଆବାହନ ଯୋଗୁ ପୃଥିବୀ ପୃଷ୍ଠକୁ ଆସି ଅଗ୍ନି ଉପରେ ଜଳ ବର୍ଷିବାକୁ ଲାଗିଲେ । କିୟତ୍‌କ୍ଷଣ ମଧ୍ୟରେ ଅଗ୍ନି ସବୁ ନିର୍ବାପିତ ହୋଇଗଲା । ଚାରିଆଡ଼େ ଶାନ୍ତି ବିରାଜମାନ କଲା । କିନ୍ତୁ ତାହା ମଧ୍ୟ ଅଳ୍ପ ସମୟ ପାଇଁ । ଦୁଇଭାଇଙ୍କ ରଣକୌଶଳ ଓ ଶୌର୍ଯ୍ୟ ଦେଖି ଦେବତାମାନେ ଆନନ୍ଦରେ ଦୁହିଁଙ୍କ ଉପରେ ପୁଷ୍ପବୃଷ୍ଟି କଲେ । ଶ୍ରୀକୃଷ୍ଣ ସ୍ୱୟଂ ମହାବିଷ୍ଣୁ ଓ ବଳରାମ ସହସ୍ର ଫଣାଧାରୀ ଆଦିଶେଷ ରୂପରେ ପ୍ରତୀତ ହେଲେ ।



ପଳାଇଯାଉଥିବା ରାଜାମାନଙ୍କୁ ଏକାଠି କରି ଜରାସନ୍ଧ କହିଲା, "ତମେ ସବୁ ରଥୀ ଓ ଅତିରଥି ଓ ମହାରଥି ଯୋଦ୍ଧା ଏଇ ଦୁଇଟା ଟୋକାଙ୍କୁ ଡରି ପଳାଉଛ ? ମୁଁ ଥାଉ ଥାଉ ସେମାନେ ତୁମର କିଛି କରିପାରିବେ ନାହିଁ । ଆସ ସେମାନଙ୍କୁ ଆକ୍ରମଣ କର ।"

ଜରାସନ୍ଧର ଆହ୍ୱାନ ଶୁଣି ପୁଣି ଯୋଦ୍ଧାମାନେ ଶ୍ରୀକୃଷ୍ଣ ଓ ବଳରାମଙ୍କ ଉପରେ ଆକ୍ରମଣ କଲେ ଓ ଅସ୍ତ୍ରଶସ୍ତ୍ର ବୃଷ୍ଟି କଲେ । ଶ୍ରୀକୃଷ୍ଣ ଓ ବଳରାମ ପୁଣି ସୈନ୍ୟ ସଂହାର କରି ଚାଲିଲେ । ଏ ବିଭତ୍ସ ଦୃଶ୍ୟ ଦେଖି ରାଜାମାନେ ଭୟ ପାଇଲେ । ଶ୍ରୀକୃଷ୍ଣ କହିଲେ, "ତମେମାନେ ବୃଥା କାହିଁକି ଆମ ସହିତ ଲଢୁଛ ? ତମେମାନେ ଏତେ ବୁଦ୍ଧିମାନ ଓ ଯୁଦ୍ଧଶାସ୍ତ୍ର ବିଶାରଦ; ପୁଣି ଡରି ଯାଉଛ ? ଏକଥା ତ ସୁନ୍ଦର ଦେଖାଯାଉ ନାହିଁ । ଆଜି ଜରାସନ୍ଧ



ତୁମକୁ ଆଗକୁ ଠେଲି ଦେଇ ପଛରେ ଲୁଚୁଛୁ। ତୁମେ ସବୁ କାହିଁକି ବୃଥାରେ ନିଜର ପ୍ରାଣ ଦେଉଛ?"

ଏକଥା ଶୁଣି ଜରାସନ୍ଧ ରାଗିଯାଇ ଆଗକୁ ଆସିଲା ଓ କହିଲା, "ମୋ ସମ୍ମୁଖରେ ତୁମେ ଦୁହେଁ କାହିଁକି ରାଜାମାନଙ୍କର ଅପମାନ କଲ। ତମେ ଯୁଦ୍ଧ କୌଶଳ କ'ଣ ଜାଣ? ବଣରେ ଗାଈ ଚରାଇବା ପିଲା ଯୁଦ୍ଧ କୌଶଳ ଦେଖାଉଛ? ଏବେ ତୁମେ ମୋ ସହିତ ଲଢ଼ାଇ କର। ଅଳ୍ପ ସମୟରେ ତୁମ ଦୁହିଁଙ୍କୁ ଯମ ହାତରେ ସମର୍ପଣ କରିବି।"

ଶ୍ରୀକୃଷ୍ଣ ହସି ହସି କହିଲେ, "ତୁମେ ମୋର ପରାକ୍ରମ ଦେଖିବାକୁ ଚାହୁଁଛ? ବୀର କେବେ ତୁମପରି ପ୍ରଲାପ କରେନାହିଁ। ମୁଁ ତୁମ ସମ୍ମୁଖରେହିଁ ଅଛି। ତୁମେ ତୁମର ଅସ୍ତ୍ରଶସ୍ତ୍ରର ଶକ୍ତି ଦେଖାଅ।"

ତା'ପରେ ଦୁହିଁଙ୍କର ଘୋର ଯୁଦ୍ଧ ହେଲା। ଜରାସନ୍ଧର ସେନାପତି ଓ ଅନ୍ୟ ରାଜାମାନେ ମଧ୍ୟ ଯୁଦ୍ଧରେ ଯୋଗ ଦେଲେ। ଶ୍ରୀକୃଷ୍ଣଙ୍କ ପକ୍ଷେ ଏକା ବଳରାମ। କିନ୍ତୁ ଅଳ୍ପ ସମୟ ମଧ୍ୟରେ ଜରାସନ୍ଧ ଓ ତା'ର ଦଳ ଅଚେତନ ହୋଇ ପଡ଼ିଗଲେ। ରଥରେ ସେମାନଙ୍କ ଅଚେତନ ଶରୀରକୁ ନେଇ ସେମାନଙ୍କ ସାରଥୀମାନେ ପଳାଇଲେ। ଶ୍ରୀକୃଷ୍ଣ ସେମାନଙ୍କ ପରାଜୟ ପରେ ଖୁସି ହୋଇ ନିଜର ପାଞ୍ଚଜନ୍ୟ ଶଙ୍ଖ ଫୁଙ୍କିଲେ।

ତା'ପରେ ଶ୍ରୀକୃଷ୍ଣ ଓ ବଳରାମ କିଛି ସମୟ ପାଇଁ ଗୋମନ୍ତ ପର୍ବତର ଦୁର୍ଗରେ ବିଶ୍ରାମ କରିବାକୁ ଗଲେ। ଏହି ସମୟରେ ଏକ ବିଚିତ୍ର ଘଟଣା ଘଟିଲା। ଜରାସନ୍ଧ ସହିତ ସମସ୍ତ ରାଜା ଓ ସୈନ୍ୟମାନେ ପଳାଇଗଲେ। କୃଷ୍ଣ ଓ ବଳରାମ ଭୟଙ୍କର ଯୁଦ୍ଧ ପରେ ବିଶ୍ରାମ ନେବା ଅବସ୍ଥାରେ ପୁଣି ଏକ ସୈନ୍ୟଦଳ ସେହି ପର୍ବତ ଆଡ଼କୁ ଆସୁଥିବାର ଦେଖି ପାରିଲେ। ସେମାନେ ଭାବିଲେ ବୋଧହୁଏ ନୂଆ ସୈନ୍ୟଦଳ ଧରି ଜରାସନ୍ଧ ପୁଣି ଯୁଦ୍ଧ କରିବା ପାଇଁ ଆସିଲାଣି। ସେମାନେ ପ୍ରସ୍ତୁତ ହୋଇ ରହିଥା'ନ୍ତି। କିନ୍ତୁ ତାଙ୍କ ଆଶଙ୍କା ଥିଲା ଅମୂଳକ। ନିକଟତର ହେବାରୁ ସୈନ୍ୟଦଳ ଓ ତା'ର ନେତା

ଚେଦିରାଜ ଦମଘୋଷଙ୍କୁ କୃଷ୍ଣ ଓ ବଳରାମ ଚିହ୍ନିଲେ । ପ୍ରକୃତରେ ସେ ହେଉଛନ୍ତି ସେମାନଙ୍କର ପିଉସା ! ହଠାତ୍ ସେ କାହିଁକି ଫେରି ଆସିଲେ, ଟିକିଏ ଆଗରୁ ତ ଜରାସନ୍ଧ ସହିତ ମିଶି ଯୁଦ୍ଧ କରୁଥିଲେ !' ସେମାନେ ଏପରି ଭାବୁଛନ୍ତି, ଠିକ୍ ସେତିକିବେଳେ ଶିଶୁପାଳର ପିତା ଦମଘୋଷ ସେଠାରେ ଉପସ୍ଥିତ ହୋଇ କହିଲେ, "ବତ୍ସ, ମୁଁ ତୁମର ନିଜର ପିଉସା, ମୁଁ ବାରମ୍ବାର ଜରାସନ୍ଧକୁ କହିଲି ତୁମ ସହିତ ଶତ୍ରୁତା ନ କରିବାକୁ । ସେ ଶୁଣିଲା ନାହିଁ । କିନ୍ତୁ ମନେରଖ ପୁଣି ସୁଯୋଗ ପାଇଲେ ସେ ତୁମକୁ ମାରିବାକୁ ଚେଷ୍ଟା କରିବ । ସେ ବଡ଼ ଧୂର୍ତ୍ତ ଓ ନିଷ୍ଠୁର । ତା'ଛଡ଼ା ଯୁଦ୍ଧ ପରେ ତୁମେ ଏଠାରେ ରହିବା ଉଚିତ ନୁହେଁ । ମୁଁ ତୁମକୁ ମୋର ଦୁଇଟି ରଥ ସମର୍ପଣ କରୁଛି ଏଥିରେ ବସି ଚାଲ । ଏ ଅଞ୍ଚଳର ରାଜା ଜରାସନ୍ଧର ପ୍ରିୟ । ତାଙ୍କୁ ଦମନ କରି ମଥୁରା ଅଭିମୁଖେ ଯାତ୍ରା କରିବା । ମୁଁ ଆଜିଠାରୁ ତୁମର ପକ୍ଷ ବୋଲି ମନେରଖ ।"

କୃଷ୍ଣ ଅତି ଆନନ୍ଦିତ ହୋଇ କହିଲେ, "ବନ୍ଧୁବାନ୍ଧବ ହେବ ତ ଆପଣଙ୍କ ପରି ହେବା ଉଚିତ୍ । ଆପଣଙ୍କର ପ୍ରେମପୂର୍ଣ୍ଣ ବାକ୍ୟ ଆମେ ସ୍ୱୀକାର କରୁଛୁ । ଆପଣ ଯେଉଁ ଆତ୍ମୀୟତା ଆଜି ଦେଖାଇଲେ ସେଥିପାଇଁ ମୁଁ ସାରା ଜୀବନ ଋଣୀ ରହିବ । ଆମେ ପ୍ରକୃତରେ ଧନ୍ୟ ହେଲୁ ?"

ତା'ପରେ ଦମଘୋଷ ଦେଇଥିବା ରଥ ଉପରେ ବସି ବଳରାମ ଓ କୃଷ୍ଣ, ଦମଘୋଷ ଓ ତାଙ୍କ ସୈନ୍ୟମାନଙ୍କ ସହ ସେ ସ୍ଥାନ ଛାଡି ଫେରିଲେ । ବାଟରେ ଜରାସନ୍ଧର ବନ୍ଧୁ ଓ ତାଙ୍କର ଶତ୍ରୁ କରବୀରପୁରର ରାଜାଙ୍କୁ ଦମନ କରିବା ଉଦ୍ଦେଶ୍ୟରେ ସେମାନେ କରବୀରପୁରରେ ପହଞ୍ଚି ଶିବିର ସ୍ଥାପନ କଲେ ।





# ତୃତୀୟ ପ୍ରଶ୍ନ

ବ୍ରହ୍ମପୁରର ରାଜା ବିନୋଦ ବର୍ମା ସାହିତ୍ୟ ଓ ଶାସ୍ତ୍ର ସମ୍ବନ୍ଧୀୟ ଚର୍ଚ୍ଚା କରିବାରେ ଖୁବ୍ ଆଗ୍ରହୀ ଥିଲେ। ନୀରସ ରାଜକାର୍ଯ୍ୟ ମନ୍ତ୍ରୀ ଓ ସେନାପତିଙ୍କୁ ଅର୍ପଣ କରି ସେ ସର୍ବଦା ସାହିତ୍ୟ, ସଙ୍ଗୀତ, ଓ ନାନା ଶାସ୍ତ୍ରର ଆଲୋଚନା ସହି କରି ସମୟ ବିତାଉ ଥା'ନ୍ତି। ଭଲ ଭଲ ପଣ୍ଡିତ, ଲେଖକ ଓ ସଙ୍ଗୀତଜ୍ଞ ମାନଙ୍କୁ ମଧ୍ୟ ପୁରସ୍କାର ଦେଉଥା'ନ୍ତି। ରାଜକାର୍ଯ୍ୟ ପ୍ରତି ରାଜାଙ୍କର ଉଦାସୀନତାର ସୁଯୋଗ ନେଇ ତାଙ୍କ ଭଣଜା, ଯିଏ ରାଜ୍ୟର ପ୍ରଧାନ ସେନାପତି, ବହୁତ ଲାଭ ଉଠାଇଥିଲେ ଓ ପ୍ରଜାମାନଙ୍କ ଉପରେ ଅତ୍ୟାଚାର କରୁଥିଲେ। ଏସବୁ ଖବର ରାଜା ଜାଣି ପାରନ୍ତି ନାହିଁ।

ଏପରି କିଛି ବର୍ଷ ବିତିଗଲା। ଏବେ ସେନାପତି ନାଗବର୍ମାଙ୍କ ଭୟରେ ରାଜାଙ୍କୁ କେହି କିଛି ଖବର ମଧ୍ୟ ଦେଇ ପାରନ୍ତି ନାହିଁ। ରାଜା ଭାବନ୍ତି ରାଜ୍ୟ ଠିକ୍ ଠାକ୍ ଚାଲିଛି। ଇତି ମଧ୍ୟରେ ନାଗବର୍ମା ଭାବିଲେ କି ରାଜାଙ୍କର ଏହି ଦୁର୍ବଳତାର ସୁଯୋଗ ନେଇ ଅନ୍ୟ ସେନାପତି ଇତ୍ୟାଦିଙ୍କୁ ହାତରେ ରଖି ରାଜାଙ୍କୁ ସିଂହାସନଚ୍ୟୁତ କରି ନିଜେ ରାଜା ହେବେ। ଏ ଖବର ମନ୍ତ୍ରୀ ପାଇବା ମାତ୍ରେ ଦିନେ ରାଜାଙ୍କୁ ଏକାନ୍ତରେ ଦେଖା କରି ସେନାପତିଙ୍କ ଷଡ଼ଯନ୍ତ୍ର ବିଷୟ କହିଲେ। ରାଜା ସ୍ୱଭାବତଃ ବିବେକଶୀଳ ଓ ବନ୍ଧୁବାନ୍ଧବମାନଙ୍କ ପ୍ରତି ସ୍ନେହଶୀଳ। ତେଣୁ ସେ ହଠାତ୍ ଏ ବିଷୟରେ କିଛି କଠୋର ପଦକ୍ଷେପ ନେଲେ ନାହିଁ।

କିଛି ଦିନ ବିତିଗଲା। ମଂତ୍ରୀ ପୁଣି ଯାଇ ରାଜାଙ୍କୁ ଏକାନ୍ତରେ ସାକ୍ଷାତ୍ କଲେ ଓ କହିଲେ, "ମହାରାଜ! ମୁଁ ବୃଦ୍ଧ ହେଲିଣି। ମୋର ଆଜି ଆଉ କାହା ପ୍ରତି ଭୟ ନାହିଁ। ରାଜ୍ୟ ଯାକର ଲୋକେ ନାଗବର୍ମା ପ୍ରତି ଭୟଭୀତ

ମହେଶ ଚନ୍ଦ୍ର

ହୋଇ ଚୁପ୍ ରହିଯାଇ ପାରନ୍ତି, କିନ୍ତୁ ମୁଁ ପାରିବି ନାହିଁ। ଆପଣଙ୍କୁ ଚେତାବନୀ ଦେଉଛି, ଆପଣ ସଙ୍ଗେ ସଙ୍ଗେ ଯଥାର୍ଥ ବ୍ୟବସ୍ଥା ନକଲେ ପରେ ଖାଲି ଅନୁତାପହିଁ ସାର ହେବ, ପ୍ରତୀକାର କରିପାରିବେ ନାହିଁ।

ତା' ପରଦିନ ରାଜା ନାଗବର୍ମାଙ୍କୁ ଡାକି ସବୁକଥା ପଚାରିଲେ। ନାଗବର୍ମା ଭକ୍ତିର ଛଳନା କରି ହାତଯୋଡ଼ି କହିଲେ, "ପ୍ରଭୁ ଏକଥା କ'ଣ ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ପାରିବି? ଆପଣଙ୍କ ଉପରେ ରାଜକାର୍ଯ୍ୟର ଗୃପା ପଡ଼ିବ ନାହିଁ ବୋଲି ମୋତେ ସମୟ ମିଳିଲେ ମୁଁ ପ୍ରଜାମାନଙ୍କ ସହିତ କଥାବାର୍ତ୍ତା କରି ସେମାନଙ୍କର ଭଲ ମନ୍ଦ ବୁଝେ। ଆପଣ ଏକଥାର ପରୀକ୍ଷା କରି ଦେଖନ୍ତୁ। ମୁଁ ଲୋକପ୍ରିୟ ହେବାରୁ ମନ୍ତ୍ରୀ ହୁଏତ ମୋତେ ଇର୍ଷ୍ୟା କରି ଏପରି କହୁଛନ୍ତି। ଆପଣ କେତେକ ପ୍ରଧାନ ବ୍ୟକ୍ତିଙ୍କୁ ଡାକି ଦରବାରରେ କଥାବାର୍ତ୍ତା କରନ୍ତୁ।"

"ମଂତ୍ରୀ କ'ଣ ମିଛ କହିଲେ? ସେ ତ ଜୀବନରେ କେବେ ବି ମୋ ଆଗରେ ଭୁଲ୍ କଥା କହି ନାହାନ୍ତି!" ରାଜା କହିଲେ।

"ମହାରାଜ! ସେ ବୁଢ଼ା ହେଲେଣି। ତାଙ୍କ ମୁଣ୍ଡ ବୋଧହୁଏ ଠିକ୍ ନାହିଁ। ତା'ଛଡ଼ା ମଂତ୍ରୀମାନେ ସେନାପତିମାନଙ୍କୁ ସର୍ବଦା ଈର୍ଷ୍ୟା କରନ୍ତି। କାରଣ, ସେନାପତିମାନେ ଜନସାଧାରଣଙ୍କ ଆଗରେ ବୀର ଭଳି ଦେଖାଯାନ୍ତି! ମୁଁ ତ କହୁଛି, ଆପଣ ଲୋକଙ୍କୁ ଡାକି ରାଜ୍ୟର ଅବସ୍ଥା ସେମାନଙ୍କଠାରୁ



ବୁଝନ୍ତୁ । ସନ୍ଦେହ ମୋଚନ ହୋଇଯାଉ ।” ନାଗବର୍ମା କହିଲେ ।

ରାଜା ନାଗବର୍ମାଙ୍କ କଥା ଶୁଣି ଓ ତାଙ୍କର ବୁଦ୍ଧିଭାବ ଦେଖି ଆଶ୍ଚର୍ଯ୍ୟ ହେଲେ । ତା'ପରେ କହିଲେ, “ଆଚ୍ଛା, ଠିକ୍ ଅଛି । ଏବେ ତମେ ପ୍ରଜାମାନଙ୍କୁ ଖବର ଦିଅ କି ସେମାନେ ସିଧା ଦରବାରକୁ ଆସି ମୋ ସହିତ କଥାବାର୍ତ୍ତା କରନ୍ତୁ ।”

ନାଗବର୍ମା “ଯେ ଆଜ୍ଞା” କହି ଚାଲିଗଲେ । ତା'ହାରେ ସମସ୍ତିଙ୍କୁ ରାଜାଙ୍କ କହିବା ଅନୁସାରେ ଖବର ଦିଆଗଲା । କିନ୍ତୁ ଭିତରେ ନାଗବର୍ମାଙ୍କ ଲୋକସବୁ ଯାଇ ପ୍ରଜାମାନଙ୍କୁ କହିଲେ କି ଯିଏ ନାଗବର୍ମାଙ୍କ ବିରୁଦ୍ଧରେ କହିବ ସିଏ ପ୍ରାଣଦଣ୍ଡ ପାଇବ ।

ଏକଥା ଶୁଣି ଅନେକ ଲୋକ ଭୟରେ ଯିବାକୁ ବି ମଙ୍ଗିଲେ ନାହିଁ । କେହି କେହି ଭାବିଲେ ବରଂ ଯାଇ ରାଜସଭାରେ ନାଗବର୍ମା ସପକ୍ଷରେ କହିଲେ କିଛି ସୁବିଧା ମିଳିବ । କିନ୍ତୁ ଅଧିକାଂଶ ଲୋକ ଗଲେ ନାହିଁ, ଯେଉଁମାନେ ଗଲେ ସବୁ ନାଗବର୍ମାଙ୍କର ସମର୍ଥକ, ସେମାନେ ନାଗବର୍ମାର ଭୂରି ଭୂରି ପ୍ରଶଂସା କଲେ । ଏସବୁ ଘଟଣା ଦେଖି ବଗୁଲ ମନ୍ତ୍ରୀ ବଡ଼ ଚିନ୍ତିତ ହୋଇ ପଡ଼ିଲେ ।

ରାଜା ହସି ହସି କହିଲେ, “ଏବେ ମୁଁ ଭାବୁଛି ଯେ ମୋ ରାଜ୍ୟରେ ଦୁଃଖ, ଅଧର୍ମ, ବା ଅନ୍ୟାୟ କିଛି ନାହିଁ ।”

ଏକଥା ଶୁଣି ନାଗବର୍ମାଙ୍କ ସମର୍ଥକମାନେ ଆନନ୍ଦରେ ତାଳି ମାରିଲେ । କିନ୍ତୁ ଜନତା





ଭିଡ଼ରୁ ଗୋବିନ୍ଦ ନାମକ ଏକ ଯୁବକ ଆଗକୁ ଆସି ବହୁତ ବିନୟ ପୂର୍ବକ ରାଜାଙ୍କୁ କହିଲା, "ଆପଣଙ୍କ ରାଜ୍ୟଶାସନ ବିଷୟରେ କୌଣସି ଆଲୋଚନା କରିବା ଭଳି ଜଣେ ବିଶିଷ୍ଟ ବ୍ୟକ୍ତି ମୁଁ ନୁହେଁ । ତଥାପି ଆପଣ ଯେତେବେଳେ ସୁଯୋଗ ଦେଇଛନ୍ତି ମୁଁ ଆପଣଙ୍କୁ ତିନୋଟି ପ୍ରଶ୍ନ ପଚାରିବାକୁ ଚାହେଁ ।"

ରାଜା କହିଲେ, "ନିଶ୍ଚୟ, ନିଶ୍ଚୟ; ଏବେ କୁହ ତୁମର ପ୍ରଶ୍ନ ଗୁଡ଼ିକ କ'ଣ ?"

ଗୋବିନ୍ଦ କହିଲା, "ମହାରାଜ, କୁହାଯାଉଛି ଯେ ଦେଶବାସୀ ସମସ୍ତେ ପେଟଭରି ଖାଇବାକୁ ପାଉଛନ୍ତି । କିନ୍ତୁ ଅଧେ ଲୋକ କାହିଁକି ଭିଖ ମାଗି ଚଳୁଛନ୍ତି ? କ'ଣ ଭିଖାରିମାନଙ୍କୁ ପ୍ରଜାମାନଙ୍କ ମଧ୍ୟରେ ଗଣନା କରାଯାଉ ନାହିଁ କି ?"

ରାଜା ଏ ପ୍ରଶ୍ନ ଶୁଣି ନାଗବର୍ମାଙ୍କ ଆଡ଼କୁ ଟିକଏ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଚାହିଁ ପୁଣି ଗୋବିନ୍ଦକୁ କହିଲେ, "ଆଚ୍ଛା, ତୁମର ଦ୍ୱିତୀୟ ପ୍ରଶ୍ନଟି କ'ଣ ?"

ଗୋବିନ୍ଦ ନିର୍ଭୟରେ କହିଲା, "ମହାରାଜ, କୁହାଯାଉଛି ଯେ ଏ ରାଜ୍ୟର ପ୍ରଜାମାନେ ନିର୍ଭୟରେ ଓ ସ୍ୱାଧୀନ ଭାବରେ ନିଜ ମତ ବ୍ୟକ୍ତ କରି ପାରିବେ । ତେବେ ଶତାଧିକ ପ୍ରଜା କାହିଁକି ଆପଣଙ୍କ କାରାଗାରରେ ବନ୍ଦୀ ଜୀବନ ଯାପନ କରୁଛନ୍ତି ?"

ରାଜା କହିଲେ, "ଓ ଏପରି କଥା । ଆଚ୍ଛା ଏବେ ତୁମର ତୃତୀୟ ପ୍ରଶ୍ନଟି ପଚାର ।"

ଏବେ ଗୋବିନ୍ଦ ହାତ ଯୋଡ଼ି କହିଲା, "ମହାରାଜ, ମୋର ଆପଣଙ୍କୁ ଗୋଟିଏ ଛୋଟିଆ ପ୍ରାର୍ଥନା ଅଛି । ଏହି ତୃତୀୟ ପ୍ରଶ୍ନ ସମ୍ଭବତଃ ମୋର ବାପା କିଛିଦିନ ପରେ ଆସି ଆପଣଙ୍କୁ ପଚାରିବେ ।"

ଗୋବିନ୍ଦର ଏପରି ନିର୍ଭୟତାପୂର୍ଣ୍ଣ ବ୍ୟବହାରରେ ରାଜା ମୁଗ୍ଧ ହୋଇ ତାକୁ ପାଖକୁ ଡାକିଲେ । ତା' କାନ୍ଧରେ ହାତ ରଖି କହିଲେ, "ସାବାସ୍, ଦେଶରେ ଏପରି ଦୁର୍ଦ୍ଦିନରେ ତୁମପରି ନିର୍ଭୀକ ଯୁବକ ମୁଁ ଚାହେଁ । ତୁମର ପ୍ରଥମ ଦୁଇ ପ୍ରଶ୍ନ ମୁଁ ବୁଝିଲି; ତା'ର ଜବାବ ମୁଁ ଦେବି । କିନ୍ତୁ ତୃତୀୟ ପ୍ରଶ୍ନ

ତୁମ ପିତା କରିବାକୁ ମୁଁ ସୁଯୋଗ ଦେବି ନାହିଁ ।”

ତା’ପରେ ଅଗ୍ନିକ ରାଜା ଦେହରକ୍ଷୀମାନଙ୍କୁ ଡାକି ନାଗବର୍ମା ଓ ତାଙ୍କର ସମସ୍ତ ସମର୍ଥକଙ୍କୁ ବନ୍ଦୀ କଲେ । ଏସବୁ ଦେଖି ମନ୍ତ୍ରୀ ମଧ୍ୟ ଆଶ୍ଚର୍ଯ୍ୟ ହୋଇଗଲେ ।

ନାଗବର୍ମାଙ୍କୁ କାରାଗାରରେ ରଖାଗଲା । ରାଜା ସ୍ୱୟଂ ନିଜର ମଂତ୍ରୀ ଓ ଅନୁଚରଙ୍କୁ ନେଇ ଦେଶର ଭଲମନ୍ଦ ବୁଝିଲେ ଓ ପ୍ରଜାମାନେ ଶାନ୍ତିରେ ଜୀବନ ଯାପନ କଲେ ।

କିଛିଦିନ ଉତ୍ତାରୁ ଦିନେ ମଂତ୍ରୀ ରାଜାଙ୍କୁ ପଚାରିଲେ, “ମହାରାଜ, ନାଗବର୍ମାଙ୍କ କୌଶଳ ଦ୍ୱାରା ଆପଣ ସମ୍ପୂର୍ଣ୍ଣ ପ୍ରଭାବିତ ହୋଇଥିଲେ ବୋଲି ମୁଁ ଭାବିଲି । ପୁଣି ଗୋବିନ୍ଦର ପ୍ରଶ୍ନ ସବୁ ପରେ ଆପଣ କ’ଣ ଭାବି ନାଗବର୍ମାଙ୍କୁ ବନ୍ଦୀ କଲେ ? ପୁଣି ଗୋବିନ୍ଦ ବାପାକୁ ତୃତୀୟ ପ୍ରଶ୍ନଟି ପଚାରିବାର ସୁଯୋଗ ବା ଦେଲେ ନାହିଁ କାହିଁକି ?”

ରାଜା ହସି ହସି କହିଲେ, “ଗୋବିନ୍ଦର ପ୍ରଶ୍ନରୁ ମୁଁ ଜାଣି ପାରିଲି ନାଗବର୍ମାର ଦୁଷ୍କୃତ ତା’ର ପ୍ରଜାପୀଡ଼ନ ଓ ଦେଶବାସୀଙ୍କର ଦୁର୍ଦ୍ଦଶା ମୁଁ ଦ୍ୱିତୀୟ ପ୍ରଶ୍ନରୁ ବୁଝିନେଲି । ତା’ପରେ ତୃତୀୟ ପ୍ରଶ୍ନ ତା’ର ବାପା ପଚାରିବାର ଅର୍ଥ ଏହାପରେ ତା’ର ଆଉ ବଞ୍ଚି ରହିବାର ସମ୍ଭାବନା ନାହିଁ । ଅର୍ଥାତ୍ ନାଗବର୍ମା ନିଶ୍ଚୟ ତାକୁ ପ୍ରାଣରେ ମାରିଦେବ । ତେଣୁ କିଛିଦିନ ପରେ ତା’ ବାପା ପୁଅକୁ ଖୋଜି ଖୋଜି ଆସି ମୋତେ ପଚାରିବ, ‘ମୋ ପୁଅ କାହିଁ ?’ ଏଇଟାହିଁ ତୃତୀୟ ପ୍ରଶ୍ନ । ତେଣୁ ମୁଁ ଏପରି ବ୍ୟବସ୍ଥା କଲି ଯେଉଁଥିରେ କି ତା’ ବାପା ଆସି ଆଉ ତୃତୀୟ ପ୍ରଶ୍ନ କରିବାର ଆବଶ୍ୟକତା ରହିବ ନାହିଁ ।”

ଗୋବିନ୍ଦର ତୃତୀୟ ପ୍ରଶ୍ନର ସଙ୍କେତ ରାଜ୍ୟ ପାଇଁ ପ୍ରକୃତରେ କେତେଦୂର କଲ୍ୟାଣ କର ଏକଥା ଭାବି ମଂତ୍ରୀ ଅତି ଆନନ୍ଦିତ ହେଲେ ।





# ଶାଶୁବୋହୂ

ସୁଦାମର ବିବାହ ଏଇ ଅଳ୍ପଦିନ ହେବ ହୋଇଛି । ତା'ର ମାମୁଁ ଖୁବ୍ ଅସୁସ୍ଥ ଥିବା ଯୋଗୁ ବିବାହରେ ଯୋଗ ଦେଇ ପାରି ନଥିଲେ । ତେଣୁ ସୁଦାମ ବିବାହର ଅଳ୍ପ ଦିନ ପରେ ମାମୁଁଙ୍କୁ ଦେଖିବାକୁ ଗଲା ।

ସୁଦାମକୁ ଦେଖି ତା' ମାମୁଁ ଖୁବ୍ ଖୁସି ହୋଇ ବିବାହର ସବୁ କୁଶଳ ପ୍ରଶ୍ନ ପଚାରିଲେ ଓ କହିଲେ, "ଭଗବାନ୍‌ଙ୍କ ଦୟାରୁ ମୁଁ ଏବେ ପ୍ରାୟ ସୁସ୍ଥ ହୋଇଗଲିଣି । ଏବେ କହ ତୋର ନୂଆ ସଂସାର କିପରି ଚାଲିଛି ? ଶାଶୁ ବୋହୂ ପରସ୍ପରକୁ ଭଲପାଇ ଆନନ୍ଦରେ ଅଛନ୍ତି ତ ? ବୋହୂ ଶାଶୁକୁ କାମଦାମରେ ସାହାଯ୍ୟ କରୁଛି ତ ?"

"ସାହାଯ୍ୟ କ'ଣ, ବୋହୂ ତ ସାରା ଘରସଂସାରର ଦାୟିତ୍ୱ ନିଜେ ନେଇଛି । ମା' ତ ଆରାମରେ ବସିଛି ।" ସୁଦାମ କହିଲା ।

"ଯାହାହେଉ, ବୁଢ଼ୀଦିନେ ତୋ ମାକୁ ଟିକିଏ ବିଶ୍ରାମ ମିଳିଲା । ବିଚାରୀ ବହୁତ କଷ୍ଟ ସହି ତୁମମାନଙ୍କୁ ମଣିଷ କରିଛି । ତୋ ବାପର ମୃତ୍ୟୁ ପରେ ସବୁ ତ ସେହିଁ ବୁଝୁଥିଲା । ଏବେ ତ ଖୁସିରେ ସମୟ କାଟିବ ।" ମାମୁଁ କହିଲେ ।

ହଁ ମାମୁଁ, ମା ବର୍ତ୍ତମାନ ଆନନ୍ଦରେ ସମୟ ଅତିବାହିତ କରିବା ଉଚିତ । ମୁଁ ମଧ୍ୟ ସେଇଆ ଭାବୁଥିଲି ଓ ମା ନିଶ୍ଚିନ୍ତ ହୋଇ ରହନ୍ତୁ ବୋଲି ଚାହୁଁଥିଲି । କିନ୍ତୁ..."

ମାମୁଁ ତା' ଆଡ଼େ ଅନାଇ ରହିଲେ ଓ ପଚାରିଲେ, "କିନ୍ତୁ କ'ଣ ? ତୁ ତ ଠିକ୍ କଥା ଭାବୁଥିଲୁ ।"

ସୁଦାମ କିଛି କହିବାକୁ ଯାଇ ଚୁପ୍ ହୋଇଗଲା । ସେକଥା ତା'ର ମାମୁଁ ଲକ୍ଷ୍ୟ କରି କହିଲେ, "ମନେ ହେଉଛି ତୁ କିଛି

କହିବାକୁ ଯାଇ ଚୁପ୍ ରହିଗଲି । ମୋ ପାଖରେ କିଛି କହିବାରେ ସଙ୍କୋଚ କାହିଁକି କରୁଛୁ ? ତୋର ଯାହା କହିବାର ଅଛି ନିଃସଙ୍କୋଚରେ କହ ।”

ସୁଦାମ କହିଲା, “ମୋର ବିବାହ ପରଠାରୁ ମା’ ସର୍ବଦା ବୁଝେଇ ରହିଲା । ସବୁବେଳେ ବସି କ’ଣ ଭାବୁଥାଏ, ଲାଗେ ଯେପରି କୌଣସି ସମସ୍ୟା ନେଇ ସେ ଗଭୀର ଚିନ୍ତାମଗ୍ନ ।”

“ତୁ ତା’ର କାରଣ କ’ଣ ପଚାରିଲୁ ନାହିଁ ?” ମାମୁଁ କହିଲା ।

“ମୁଁ ପଚାରିବା ପୂର୍ବରୁହିଁ, ଦିନେ ବୋହୂ ପୋଖରୀକୁ ଯାଇଛି ବାସନ ମାଜି ପାଣି ଆଣି ଆସିବାକୁ, ମା’ ମୋତେ ପାଖକୁ ଡାକି କହିଲା, “ପୁଅ, ତୋ ସ୍ତ୍ରୀ ସୁନ୍ଦର, କିନ୍ତୁ ସେକଥା ତା’ ମୁହଁ ଉପରେ କହିବୁ ନାହିଁ ।”

ମୁଁ କହିଲି, “କାହିଁକି କ’ଣ ହେଲା କହିଲେ ?”

ମା’ କହିଲା, “ସେପରି କଲେ ସେ ଗର୍ବିତ ହୋଇଯିବ ଓ ତୋର ଅବହେଳା କରିବ ।”

ତା’ପରେ ମା’ କହିଲା, “ନିଜ ସ୍ତ୍ରୀ ବୋଲି ସବୁକଥା ତାକୁ କହିବୁ ନାହିଁ ।”

“କାହିଁକି କହିବି ନାହିଁ ?” ମୁଁ ପଚାରିଲି ।

“ସେ ଯେଉଁଠି ସେଇଠି ଓ ଯାହାକୁ ତାହାକୁ ଘରର ଗୋପନୀୟ କଥା ସବୁ କହିଦେବ ।”

“ଆଚ୍ଛା, ତାପରେ ?” ମୁଁ ପଚାରିଲି ।




“ତା’ପରେ ସିଏ ଯେତେ ଭଲ କଥା କହିଲେ ମଧ୍ୟ ହଠାତ୍ ତା’ କଥାରେ ପଡ଼ି କିଛି କରିବୁ ନାହିଁ ।” ମା’ କହିଲା ।

“କଲେ କ’ଣ ହେବ ?” ମୁଁ ପଚାରିଲି ।

“କ’ଣ ହେବ ? ତା’ପରେ ମୋତେ ଏ ଘରୁ ବାହାର କରି ଦେବାକୁ ମଧ୍ୟ ତତେ ଶିଖେଇବ ।”

ଏସବୁ ଅଜବ କଥା ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ତା’ପରେ ମା’ କହିଲା, “ଶୁଣ ସିନ୍ଦୁକର ଚାବି ତାକୁ କେବେ ଦେବୁ ନାହିଁ ।”

“ଦେଲେ ହେବ କ’ଣ ?” ମୁଁ ପଚାରିଲି ।

“ଆରେ ବୋକା, ତୋର ସବୁ ପଇସା ନେଇ ବାପଘରେ ପୂରାଇବ ।” ମା’ କହିଲା ।

ସବୁ ଶୁଣିବା ପରେ ମୁଁ ମାଙ୍କୁ ପଚାରିଲି, "ମା ଏସବୁ କଥା ତୁ ଆଜି ତୋ ମୁଣ୍ଡରେ ପଶିଲା ? ନିହାତି ଅସଙ୍ଗତ କଥା ।"

ଏକଥା ଶୁଣି ମାମୁଁ କହିଲେ, "ପୁଅ, ତୋତେ ଯାହା ପଚାରୁଥିଲି ତା'ର ଉତ୍ତର ପାଇଲି । ଏବେ କହ ତ ତୋ ମା' ତୋତେ କି ଉତ୍ତର ଦେଲା ?"

ମା' କହିଲା, "ପୁଅ କେଉଁଠି ମା'କୁ ଏସବୁ ପ୍ରଶ୍ନ ପଚାରେ ? ଏବେ ମୁହଁ ବନ୍ଦ କରି ଚୁପ୍ ରହ ।" ଏତକ କହି ମା' ମୋ ପାଖରୁ ଉଠି ରନ୍ଧାଘର ଆଡ଼େ ଚାଲିଗଲା ।" ସୁଦାମ କହିଲା ।

ଏକଥା ଶୁଣି ମାମୁଁ ହସି ହସି ଗଡ଼ିଗଲେ । ତା'ପରେ ଗମ୍ଭୀର ହୋଇଗଲେ । ଏସବୁ ଦେଖି ସୁଦାମ ପ୍ରଶ୍ନ କଲା, "ମାମୁଁ, ଏ ବିଷୟରେ କିଛି ଜାଣିଥିଲେ ମୋତେ କୁହ, ମୋର ବା ମୋ ସ୍ତ୍ରୀର ଭୁଲ୍ ଥିଲେ ମୁଁ ସୁଧାରି ନେବି ।"

"ମୁଁ ଜାଣେ ସବୁ, ତେବେ ତୁ ଜାଣି କ'ଣ ଲାଭ ହେବ ?" ମାମୁଁ ପଚାରିଲେ ।

"ମୁଁ ମା'ର ଭୟ ଓ ଆଶଙ୍କାର କାରଣ ଜାଣିଲେ ତାକୁ ଦୂର କରିବାକୁ ଚେଷ୍ଟା କରିବି । ସେ ଅନ୍ତତଃ ଶାନ୍ତିରେ ରହିବ ।" ସୁଦାମ କହିଲା ।

"ତେବେ ଶୁଣ । ଯେଉଁ ସବୁ କଥା ସେ ତୋ ସ୍ତ୍ରୀ ବିଷୟରେ ଆଶଙ୍କା କରୁଛି, ସେସବୁ ସେ ନିଜେ କରିଥିଲା ଯେତେବେଳେ ନୂଆ ବାହାହୋଇ ଗଲା । ସେଥିପାଇଁ ତା'ର ଭୟ ।"

ଏକଥା କହି ମାମୁଁ ହସିଲେ ଓ ସୁଦାମ ମଧ୍ୟ ହସିଲା ।

ତା'ପରେ ମାମୁଁ କହିଲେ, "ସୁଦାମ ! ତୋ ମା ତୋତେ ଏସବୁ କଥା କହୁଛନ୍ତି, ଏହା ଯେପରି ତୋ ସ୍ତ୍ରୀ ନ ଜାଣନ୍ତି ।"

"କାହିଁକି ?" ସୁଦାମ ପଚାରିଲା ।

"ତୋ ମାଙ୍କ ପ୍ରତି ବୋହୂର ଶ୍ରଦ୍ଧା କମି ଯାଇ ପାରେ ।" ମାମୁଁ ବୁଝାଇ ଦେଲେ ।'





# ସ୍ୱର୍ଗୀୟ ଦାନ

ଗୋଟିଏ ଗ୍ରାମରେ ଦୁଇଜଣ ସ୍ତ୍ରୀ ଥା'ନ୍ତି । ଜଣେ ଧନୀ ଓ କଂଜୁସ୍ । ଦ୍ୱିତୀୟ ଜଣକ ଗରିବ ଥିଲେ ମଧ୍ୟ ଅତ୍ୟନ୍ତ ଦୟାଳୁ ଥିଲା । ତା'ର ହୃଦୟ ଥିଲା ନବନୀତ କୋମଳ, ଗରିବ ବା ଅସହାୟ ଲୋକଙ୍କର ଯେତିକି ପାରେ ସହାୟତା କରେ । ତା' ଦୁଆର ମୁହଁରୁ କେବେ ଦୁଃଖିରଙ୍କି ଖାଲି ହାତରେ ଫେରନ୍ତି ନାହିଁ । ଦୁଇଜଣ ପରସ୍ପରର ପଡ଼ୋଶୀ ।

ଧନୀ ମହିଳାଙ୍କ ପରିବାର ସହରରେ ରହି ବ୍ୟବସାୟ କରୁଥାନ୍ତି । ଗାଁରେ ସେମାନଙ୍କର କିଛି ଜମିଜମା ଥାଏ ବୋଲି ମହିଳାଟି ଗାଁରେ ରହି ସେସବୁର ତତ୍ତ୍ୱାବଧାନ କରୁଥାନ୍ତି । ଗରିବ ମହିଳାଟିର ଖାଲି ପୁଅଟିଏ ଥାଏ । ସେ ବି ସହରରେ ଥାଏ, ତେବେ ସାଧାରଣ ଚାକିରି କରୁଥାଏ । ତା' ମା ଘରେ ଗୋଟିଏ ତନ୍ତ ରଖିଥାଏ । [illegible] ପରିଶ୍ରମ କରି ସେଥିରେ ଲୁଗା ବୁଣି କିଛି ଆୟ କରେ । ଗାଁ ଲୋକେ ଗରିବ ମହିଳାକୁ ବହୁତ ଶ୍ରଦ୍ଧା କରୁଥାନ୍ତି । ତେଣୁ ସେ ନିଜର ଦାରିଦ୍ର୍ୟ ଯୋଗୁଁ କେବେ ମଧ୍ୟ ଦୁଃଖ ବୋଧ କରୁ ନଥାଏ ।

ଦିନେ ସନ୍ଧ୍ୟା ସମୟରେ ଜଣେ ଭିକାରି ରାସ୍ତାରେ ବୁଲୁ ବୁଲୁ ଧନୀ ସ୍ତ୍ରୀର ଘର ସମ୍ମୁଖରେ ଅଟକିଗଲା ଓ ଭିକ ମାଗିଲା । ଧନୀ ସ୍ତ୍ରୀ କବାଟ ଖୋଲି ଭିକାରିକୁ ଦେଖି ଧଡ଼ାସ୍ କରି କବାଟ ବନ୍ଦ କରିଦେଲା ।

"ଆଚ୍ଛା ମା, ଭିକ ନ ମିଳିଲା ନାହିଁ, ମୁନ୍ଦାଏ ପାଣି ପିଇବାକୁ ମିଳୁ । ମୋତେ ବହୁତ ଶୋଷ କରୁଛି ।" ଭିକାରି କହିଲା । କିନ୍ତୁ ଭିତରୁ ଖାଲି ଏତିକି ଶୁଭିଲା, "ଏଠି ଗୋଳମାଳ କରନାହିଁ । ଯାଅ ।"

ଭିକାରି ତଥାପି କିଛି ସମୟ ଠିଆ ହୋଇ ରହି ତା'ପରେ ପୁଣି ଚାଲିବାକୁ ଆରମ୍ଭ କଲା ।

ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ



ଭିଖାରୀ ଦୁଇପାଦ ଆଗକୁ ଯାଇ ଗରିବ ସ୍ତ୍ରୀର ଘରେ ପହଞ୍ଚିଲା । ତାକୁ ଦେଖି ସ୍ତ୍ରୀ ଲୋକଟି ଭିତରକୁ ଗଲା । ସେଦିନ କିନ୍ତୁ ନିଜ ପେଟ ଭରିଲା ଭଳି ଖାଦ୍ୟ ତା' ଘରେ ନଥିଲା । ତେଣୁ ସେ ଖଣ୍ଡେ ରୁଟି ଓ କିଛି ଦହି ନେଇ ଆସି ତାକୁ ଦେଲା ଓ କହିଲା, "ଭାଇ ମୋ ଘରେ ଆଉ ବେଶି କିଛି ନାହିଁ, ଏତିକି ଖାଇନିଅ । ଯଦି ବିଶ୍ରାମ କରିବାକୁ ଇଚ୍ଛା, ତେବେ ପିଣ୍ଡାରେ ଶୋଇଯାଅ ।"

ଭିଖାରୀ ରୋଟି ଖାଇ, ଦହି ପିଇଦେଲା ଓ ସେହି ସ୍ତ୍ରୀକୁ ପଚାରିଲା, "ମା', ତୁମର କୌଣସି କିଛିର ଅଭାବ ନାହିଁ ତ? ସବୁ ଠିକ୍ ଚାଲୁଛି ତ?"

ସ୍ତ୍ରୀଟି କହିଲା, "ଭାଇ, ମୋର ଅଧିକ କ'ଣ ଦରକାର? କୌଣସି ମତେ ଭଗବାନ୍‌ଙ୍କ ଦୟାରୁ ଚଳିଯାଉଛି ! ସେଇଥିରେ ମୋର ବହୁତ ଖୁସି ।"

"ମା', ଯିଏ ଦିଏ ସିଏ ପାଏ । କାଲି ଦେଖିବ ତମେ ସକାଳୁ ଯେଉଁ କାମ କରିବ ତାହା ସନ୍ଧ୍ୟା ପର୍ଯ୍ୟନ୍ତ ଚାଲିବ ।" ଏତିକି କହି ଭିଖାରୀଟି ତା' ନିଜ ରାସ୍ତାରେ ସେଠାରୁ ଚାଲିଗଲା ।

ଗରିବ ସ୍ତ୍ରୀଟି ଭିଖାରୀ କଥା ବିଶେଷ କିଛି ବୁଝିପାରିଲା ନାହିଁ । ସେସବୁ ସେ ସଂପୂର୍ଣ୍ଣ ଭୁଲିଗଲା ।

ସକାଳୁ ଉଠି ସେ ପ୍ରଥମେ ଭାବିଲା କାଲି କେତେ ସୂତା କାଟିଛି ଓ କେତେ ଲୁଗା ବୁଣିଛି ମାପି ଦେଖିଲେ ଆଉ କିଛି ଅଧିକା ବୁଣିଦେଲେ ସେ ସପ୍ତାହର ଘର ଖର୍ଚ୍ଚ ଚଳିଯିବ ।

ତା'ପରେ ସେ ସିନ୍ଦୁକରୁ ଲୁଗା କାଢି ମାପିବାକୁ ଲାଗିଲା । ଏକ, ଦୁଇ, ତିନି କାହିଁ ଶେଷ ହେଉନାହିଁ ଯେ ! ସେ ମାପି ଚାଲିଛି ଓ ଲୁଗା ଗଦା ହୋଇ ଚାଲିଛି । ସେତେବେଳେ ଯାଇ ତା'ର ମନେ ପଡିଲା ଯେ ଗତକାଲି ଭିଖାରୀଟି କହିଥିଲା, "ତୁମେ ସକାଳୁ ଯାହା କାମ କରିବ ସନ୍ଧ୍ୟା ପର୍ଯ୍ୟନ୍ତହିଁ କରୁଥିବ ।" ସେଦିନ ସନ୍ଧ୍ୟା ପର୍ଯ୍ୟନ୍ତ ସେ ଲୁଗା ମାପି ମାପି ଥକି ଗଲା । ସୂର୍ଯ୍ୟାସ୍ତ ପରେ ତାହା ବନ୍ଦ ହେଲା । ସେଥିରେ ତ ଘର ପୂରିଗଲା । ଗରିବ



ସ୍ତ୍ରୀଟି ଅଗ୍ଣନକ ବଦ୍ଭୁତ ଲୁଗା ପାଇ ଖୁବ୍ ଖୁସି ହେଲା ଓ ଆଶ୍ଚର୍ଯ୍ୟ ହେଲା ଭିଖାରୀର ଶକ୍ତି ଦେଖି ।

ପରଦିନ ଗ୍ରାମବାସୀମାନେ ତା'ଠାରୁ ଲୁଗା କପଡ଼ା କିଣିଲେ । କଥାଟା ଆଉ ଲୁଚି ରହିଲା ନାହିଁ । ପଡ଼ୋଶୀ ଧନୀ ମହିଳାଟି ଈର୍ଷ୍ୟାରେ ଜଳିଲା । କାରଣ ଭିଖାରୀଟି ତ ପ୍ରଥମେ ତାଙ୍କର ଦ୍ୱାରକୁହିଁ ଆସିଥିଲା । "ଆହାରେ କି କଲି" ବୋଲି କହି ସେ ମଥା କୋଡ଼ିଲା ।

ମନେ ମନେ ସେ କହୁଥାଏ, "ଆଉ ଥରେହେଲେ ସେ ଅଦ୍ଭୁତ ଭିଖାରୀଟି ଆସନ୍ତା କି! ଏଥର ତା' ସହ ଏମିତି ଭଲ ବ୍ୟବହାର କରନ୍ତି ଯେ ମୋତେ ଆହୁରି ଅଧିକା ବର କିଛି ଦେଇ ପକାନ୍ତା !"

ଏ ଘଟଣାର ତିନି ଚାରିଦିନ ପରେ କିଏ ଜଣେ ଆସି ଦରଜା ଖଟଖଟ କଲା । ଧନୀ ସ୍ତ୍ରୀଟି ଯାଇ ଖୋଲି ଦେଇ ଦେଖିଲେ ସେହି ପୂର୍ବ ଭିଖାରୀ ପୁଣି ଆସିଛି । ତା'ର ଆନନ୍ଦ କହିଲେ ନ ସରେ ।

"ପୁଅ, ତମେ ଆସିଛ? ଆସ, ଆସ, ଭିତରକୁ ଆସ । ସେଦିନ ମୁଁ କାର୍ଯ୍ୟବ୍ୟସ୍ତ ଥିବାରୁ ତୁମର ଅତିଥି ସତ୍କାର କରିପାରି ନାହିଁ, ମୋର ବଡ଼ ଭୁଲ ହୋଇଛି ।" ସେ ଭିଖାରୀକୁ ଭଲ କରି ଖାଇବାକୁ ଦେଲା । ଭିଖାରୀର ମନ ରଖିବାକୁ ପଡ଼ିବ, ନହେଲେ ବର ପାଇବ କିପରି ?

ଖାଇବାକୁ ଦେଇସାରି ସେ କହିଲା, "ଆଚ୍ଛା ପୁଅ, ତମେ ଏତେ ରାତିରେ ବା କୁଆଡ଼େ ଯିବ? ଆସ ଘର ଭିତରକୁ । ମୁଁ ଭଲ ଶେଯ ବିଛାଇ ତମପାଇଁ ବିଛଣା କରିଛି ଓ ରେଜେଇ ରଖିଛି; ଘୋଡ଼ି ହୋଇ ଆରାମରେ ଶୋଇଯାଅ ।"

ଭିଖାରୀ ସେଥିରେ ସମ୍ମତ ହେଲା ନାହିଁ । ସେ ଖାଇପିଇ ସାରି ହସିଦେଇ ଘରୁ ବାହାରି ଯିବାକୁ ବସିଲା । ମହିଳାଙ୍କ ମନ ମରିଗଲା । ଭିଖାରୀ କ'ଣ ବିନା ବରଦାନରେ ପଳାଇଯିବ? ବରଂ ତା'ର ଆଉ କିଛି ପରିଚର୍ଯ୍ୟା କରାଯାଉ, ଯେତିକି ପରିଚର୍ଯ୍ୟା କରାହୋଇଛି ତାହା ଅର୍ଥହୀନ ହୋଇ ନ ଯାଉ !

ସେ କହିଲେ, "ପୁଅ, ତମେ ତ ବହୁତ କ୍ଲାନ୍ତ ଦିଶୁଛ । ଏଠାରେ ରାତିଟି କଟାଇଲେ କ୍ଷତି କ'ଣ ? କଥା ହେଲା, ମୁଁ କାହାର କଷ୍ଟ ସହିପାରେ ନାହିଁ !"

ଭିଖାରି କହିଲା, "ନାହିଁ ମା' ମୋତେ ଅନେକ ଦୂର ଯିବାକୁ ଅଛି । ତମେ ମୋର ବହୁତ ଆଦର ଯତ୍ନ କରିଛ ମୁଁ ଆଶିର୍ବାଦ କରୁଛି ତମେ କାଲି ସକାଳୁ ଯେଉଁ କାମ କରିବ ତାହା ସନ୍ଧ୍ୟା ପର୍ଯ୍ୟନ୍ତ ଲାଗି ରହିଥାଉ ।" ଏତିକି କହି ସେ ଚାଲିଗଲା ।

ଧନୀ ସ୍ତ୍ରୀ ତ ଖୁସିରେ ନାଚିଲା । ରାତି ସାରା ତାକୁ ନିଦ ହେଲା ନାହିଁ । ଶେଷକୁ ରାତି ପାହିଲା । ଆଗରୁ ଠିକ୍ କରିଥିଲା ଯେ ଯଦି ସେ ସକାଳୁ ତା'ର ସୁନା ମୋହର ଗୋଟିଗୋଟି ଗଣି ବସିବ ତେବେ ସୂର୍ଯ୍ୟାସ୍ତ ଭିତରେ ତା'ର ଲକ୍ଷ ଲକ୍ଷ ମୋହର ଆସିଯିବ । ସେ ବିଛଣାରୁ ଉଠି ପଡ଼ି ମୋହର ବାକ୍ସ ପାଖକୁ ଯାଉଛି ଗୋଟିଏ ବିରୁଡ଼ି ଆସି ତାକୁ କାମୁଡ଼ି ଦେଲା । ସେ ବିରୁଡ଼ିକୁ ମାରିଲା । ପୁଣି ଗୋଟିଏ ବିରୁଡ଼ି ଆସିଲା । ପୁଣି ସେ ମାରିଲା । ଏହିପରି ଏକ ପରେ ଏକ ଶହ ଶହ ହଜାର ହଜାର ବିରୁଡ଼ି ଆସି ତାକୁ ମାରିବାକୁ ଲାଗିଲେ । ସେ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଯନ୍ତ୍ରଣାରେ ଛଟପଟ ହେଲା । ଭିଖାରି କ'ଣ ଆଶିର୍ବାଦ ଦେଇଛି ବୋଲି ଗ୍ରାମ ସାରା ଲୋକେ ବହୁତ କୌତୁହଳୀ ହୋଇ ଦେଖିବାକୁ ଆସିଥା'ନ୍ତି । ସେହି କଞ୍ଜୁସ, ନିର୍ଦ୍ଦୟ ସ୍ତ୍ରୀ କଷ୍ଟ ପାଇବାରୁ ସମସ୍ତେ ମଜା ଦେଖୁଥା'ନ୍ତି । ସୂର୍ଯ୍ୟାସ୍ତ ପରେ କ୍ରମେ ବିରୁଡ଼ିମାନେ ପଳାଇଲେ । ଗ୍ରାମବାସୀମାନେ ମଧ୍ୟ ନିଜ ନିଜ ଘରକୁ ଚାଲିଗଲେ । ସ୍ତ୍ରୀ ଲୋକଟି ଏ ଘଟଣା ଯୋଗୁ ଏତେ ଅପମାନ ବୋଧକଲା ଯେ ତା'ପରେ ସେ ସକାଳ ହେବା ବେଳକୁ ଗୋଟିଏ ଗାଡ଼ି ଭଡ଼ା କରି ସେଥିରେ ସବୁ ଜିନିଷ ନେଇ ଗ୍ରାମ ଛାଡ଼ି ସହରକୁ ପଳାଇଲା ।



## ଉଚ୍ଚ ଆଗ୍ନେୟଗିରି

ଆର୍ଜେଣ୍ଟାଇନାସ୍ଥ ଆକୋନକାଗୁଆ ହେଉଛି ପୃଥିବୀର ଉଚ୍ଚତମ ମୃତ ଆଗ୍ନେୟଗିରି । ୨୨,୮୩୪ ଫୁଟ୍ ଉଚ୍ଚ ଏହି ମୃତ ଆଗ୍ନେୟଗିରି ପଶ୍ଚିମ ପର୍ବତମାଳା ମଧ୍ୟରେ ସର୍ବୋଚ୍ଚ ପର୍ବତ ।

## ଉଡ଼ନ୍ତା ମାର୍ସୁପିୟଲ୍



ଫାଲଞ୍ଜର ଜାତିର ମାର୍ସୁପିୟଲ୍ ନାମକ ଜନ୍ତୁ ଅତ୍ୟନ୍ତ କୁଶଳତା ସହିତ ଉଡ଼ିପାରେ । ସେ ତାର ଗୋଡ଼ମାନଙ୍କ ସହିତ ଲାଗିଥିବା ଢିଲା ଚମକୁ ପ୍ରସାରିତ କରି ସୁନ୍ଦର ଭାବରେ ଉଡ଼ି ପାରେ ଓ ସୁଦୂର ସ୍ଥାନ ସବୁରେ ପହଞ୍ଚିଯାଏ ।

## ଖସଡ଼ା ନଦୀ

ଚୀନ୍‌ର ୟେଲୋ ରିଭର୍ (ପୀତ ନଦୀ) ପୃଥିବୀର ସବୁଠାରୁ ଖସଡ଼ା ନଦୀ । ଏହାର ଦୁଇଧାରରେ ହଳଦିଆ ରଙ୍ଗର ଚିକ୍‌କଣ ଖସଡ଼ା କାଦୁଅ ସବୁ ରହିଥିବାରୁ ଏହି ନଦୀର ଏପରି ନାମକରଣ ହୋଇଛି ।



# ଫଟୋ ପରିଚୟ ପ୍ରତିଯୋଗିତା : ପୁରସ୍କାର ୫୦

ପୁରସ୍କୃତ ପରିଚୟୋକ୍ତି ଜାନୁଆରି ୧୯୮୯ ସଂଖ୍ୟାରେ ପ୍ରକାଶ ପାଇବ



S. B. Takalkar



S. M. Dudhediya

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଶବ୍ଦ ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ନଭେମ୍ବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର । ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ । ★ ପରିଚୟୋକ୍ତି ସହ ଠିକଣା ପୋଷ୍ଟକାର୍ଡରେ ଲେଖି ନିମ୍ନ ଠିକଣାରେ ପଠାନ୍ତୁ :

**ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାନ୍ଦ୍ରାସ-୬୦୦୦୨୬**

---

## ସେପ୍ଟେମ୍ବର '୮୮ ପ୍ରତିଯୋଗିତାର ଫଳ

**ପ୍ରଥମ ଚିତ୍ର : ଦାନ୍ତଘଷା ମୋର ଏତିକିରେ ଥାଉ କ୍ଷୀର ମୁଁ ପିଇବ ନାହିଁ !**

**ଦ୍ୱିତୀୟ ଚିତ୍ର : ଫିଟାଇଦିଅ ମା ବାଛୁରୀକୁ ତା'ର କାନ୍ଦୁ ଅଛି କାଳୀ ଗାଈ !!**

**ପୁରସ୍କାର ବିଜୟୀ : ଚୌଧୁରୀ ଶାନ୍ତନୁ କୁମାର କର, ଗଣେଶ୍ୱରପୁର, କଟକ**

ବିଜୟୀଙ୍କୁ ଅଭିନନ୍ଦନ, ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।


## ଜହ୍ନମାମୁଁ

**ବାର୍ଷିକ ଦେୟ : ଟ. ୩୬-୦୦**

ମନିଅର୍ଡର ପଠାଇବା ଠିକଣା :

ଡଲ୍‌ଟନ୍ ଏଜେନ୍‌ସିଜ୍, ଚନ୍ଦାମାମା ବିଲ୍‌ଡିଙ୍ଗ୍‌ସ୍, ବଡପଲନୀ, ମାନ୍ଦ୍ରାସ-୬୦୦୦୨୬

ବିଦେଶ ସଡାକରେ ଦେୟ ବିବରଣୀ ପାଇଁ ନିମ୍ନ ଠିକଣାକୁ ଲେଖନ୍ତୁ :

ଚନ୍ଦାମାମା ପବ୍‌ଲିକେଶନ୍‌ସ୍, ଚନ୍ଦାମାମା ବିଲ୍‌ଡିଙ୍ଗ୍, ବଡପଲନୀ, ମାନ୍ଦ୍ରାସ-୬୦୦୦୨୬

Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISHWANATHA REDDI on behalf of CHANDAMAMA PUBLICATIONS, Chandamama Buildings, Vadapalani, Madras 600 026 (India). Controlling Editor: NAGI REDDI.


---

